


# ଅଠାବନ ବର୍ଷ ପରେ...

**ଭା**ରତ ପରି ଏକ ଜନବହୁଳ ଓ ବିଭିନ୍ନ ରାଜ୍ୟକୁ ନେଇ ଗଠିତ ରାଷ୍ଟ୍ର ପାଇଁ ସମ୍ବିଧାନ ହେଉଛି ଜୀବନ୍ତ ଦେବତା ସଦୃଶ । ତେବେ ସ୍ୱାଧୀନତାର ଉତ୍ତର କାଳରେ ଭାରତୀୟମାନେ ସମ୍ବିଧାନର ଆଧାରରେ ଆପଣାକୁ ଶାସନ କରିବାର ଅଠାବନ ବର୍ଷ ପରେ ମଧ୍ୟ ଆମେ ଆମ ସମ୍ବିଧାନକୁ ଶତାଧିକ ବାର ସଂଶୋଧନ କରିବାକୁ ପଶ୍ଚାଦପଦ ହୋଇ ନାହୁଁ । ତେବେ ଏପରି ସଂଶୋଧନ ଓ ସାଧାରଣତନ୍ତ୍ର, ଅଠାବନ ବର୍ଷ ପରେ କେତେ ଦୂର ଫଳପ୍ରଦ ହୋଇପାରିଛି ? ଏପରି ପ୍ରଶ୍ନ ହୁଏ ତ ପ୍ରତ୍ୟେକ ସଚେତନ ଭାରତୀୟଙ୍କୁ ଆଚ୍ଛନ୍ନ କରୁଥିବ ।

ଆମ ସମ୍ବିଧାନର ମୁଖବନ୍ଧରେ ସମ୍ବିଧାନର ବୈଶିଷ୍ଟ୍ୟ ପ୍ରତିଫଳିତ । ସେଥିରେ ନିହିତ ଭାବ ଓ ଭାଷା ଖୁବ୍ ହୃଦୟସ୍ପର୍ଶୀ । ପୁନର୍ବାର ପ୍ରଶ୍ନ ଉଠୁଛି, ପ୍ରକୃତରେ ଭାରତୀୟ ଜନସାଧାରଣଙ୍କ ଆଶା ଓ ଆକାଂକ୍ଷା କ'ଣ ତଦ୍ଦ୍ୱାରା ପ୍ରସ୍ଫୁଟିତ ହୋଇପାରିଛି ?

ସ୍ୱାଧୀନତା ପ୍ରାପ୍ତି ପରେ ଭାରତର ସମ୍ବିଧାନ ପ୍ରଣୟନ ପାଇଁ ସମ୍ବିଧାନ ପ୍ରଣୟନକାରୀ ସଭା ବା ଗଣ ପରିଷଦ ଗଠିତ ହୋଇ ସେହି ପ୍ରକ୍ରିୟା ତ୍ୱରାନ୍ୱିତ କରିବାକୁ ଉଦ୍ୟମ ଜାରି ରଖିଥିଲେ । ୧୯୪୭ ଅଗଷ୍ଟ ୨୯ରେ ସମ୍ବିଧାନର ଖସଡ଼ା ବା ଚିଠା ପ୍ରସ୍ତୁତ କରିବା ପାଇଁ ଯେଉଁ କମିଟି ଗଠିତ ହୋଇଥିଲା, ବିଶିଷ୍ଟ ଆଇନ ବିଶାରଦ ଡଃ ବି.ଆର୍. ଆମ୍ବେଦକର ତାହାର ଅଧ୍ୟକ୍ଷ ରହିଥିଲେ । ଏହାବ୍ୟତୀତ ବିଶିଷ୍ଟ ଭାରତୀୟମାନଙ୍କୁ ନେଇ ଅନ୍ୟାନ୍ୟ କମିଟି ଓ ସବ୍‌କମିଟିମାନ ଆମ ସମ୍ବିଧାନ ପାଇଁ ଗଠିତ ହୋଇଥିଲା । ସେହି କମିଟି ଓ ସବ୍‌କମିଟି ଯେଉଁ ବିଷୟଗୁଡ଼ିକର ସୁପାରିଶ କରିଥିଲେ, ଆମ୍ବେଦକରଙ୍କ ନେତୃତ୍ୱରେ ଗଠିତ ସମ୍ବିଧାନର ଖସଡ଼ା ପ୍ରସ୍ତୁତକାରୀ କମିଟି, ୧୯୪୮ ଫେବୃଆରୀ ମାସରେ ସେସବୁକୁ ସମ୍ବିଧାନ ପ୍ରଣୟନକାରୀ ସଭା ବା ଗଣ ପରିଷଦରେ ଉପସ୍ଥାପିତ କରିଥିଲେ । ମାତ୍ର ବହୁ ତର୍କବିତର୍କ ଓ ବିଚାରବିମର୍ଷ ପରେ କୁଆଡ଼େ ସେହି ସାମ୍ବିଧାନିକ ଖସଡ଼ାରେ ଅନେକ ସଂଶୋଧନ ଓ ପରିବର୍ତ୍ତନ ସଂଘଟିତ ହୋଇଥିଲା ଓ ଅବଶେଷରେ ପ୍ରସ୍ତାବିତ ଆମର ସମ୍ବିଧାନ ୧୯୪୯ ନଭେମ୍ବର ୨୬ ତାରିଖରେ ସମ୍ବିଧାନ ପ୍ରଣୟନକାରୀ ସଭା ବା ଗଣ ପରିଷଦର ଅନୁମୋଦନ ଲାଭ କରିଥିଲା । ସେତେବେଳେ ସମ୍ବିଧାନର ଅନେକ ଅନୁଚ୍ଛେଦକୁ ତୁରନ୍ତ କାର୍ଯ୍ୟକାରୀ କରାଯାଇଥିଲା ଆଉ ସମ୍ବିଧାନର ମୁଖବନ୍ଧସମେତ ଅବଶିଷ୍ଟ ଅନୁଚ୍ଛେଦଗୁଡ଼ିକୁ ୧୯୫୦ ମସିହା ଜାନୁଆରୀ ୨୬ ତାରିଖରୁ ଜୀବନ୍ନ୍ୟାସ ଦିଆଯାଇଥିଲା ।

ଆମର ଏହି ପବିତ୍ର ସମ୍ବିଧାନ ଏବେ ଯେ ରହଣିଆ ଓ ପୁରୁଣାକାଳିଆ ଏବଂ ପରିବର୍ତ୍ତିତ ପରିସ୍ଥିତିରେ ତାହାର ସଂଶୋଧନ ଓ ପରିବର୍ତ୍ତନ ଅବଶ୍ୟମ୍ଭାବୀ ବୋଲି କିଛି ବର୍ଷ ତଳେ ମନେ କରିଥିଲେ ଶ୍ରୀ ଅଟଳ ବିହାରୀ ବାଜପେୟୀଙ୍କ ନେତୃତ୍ୱରେ ଗଠିତ ଭାରତର ଏନ୍.ଡି.ଏ. ସରକାର । ତେଣୁ ସୁପ୍ରିମକୋର୍ଟର ଅବସରପ୍ରାପ୍ତ ପ୍ରଧାନ ବିଚାରପତି ଶ୍ରୀ ଭେଙ୍କଟ ଚାଲିହାଙ୍କ ନେତୃତ୍ୱରେ ଏକ ଉଚ୍ଚସ୍ତରୀୟ ବିଶେଷଜ୍ଞ କମିଟି ଗଠିତ ହୋଇ ସେସବୁର ସମୀକ୍ଷା କରିଥିଲେ । ମାତ୍ର ସେହି କମିଟି ସମ୍ଭବତଃ ତାହାର ବୈଠକକୁ ସଂପୂର୍ଣ୍ଣ କରିପାରିନାହାନ୍ତି ।

ଆମ ସମ୍ବିଧାନର ପ୍ରଥମ ଅନୁଚ୍ଛେଦାନୁଯାୟୀ ଯଦିଓ ଭାରତକୁ ଏକ ୟୁନିଅନ ଭାବରେ ବର୍ଣ୍ଣନା କରାଯାଇଛି, ପ୍ରକୃତପକ୍ଷେ ରାଜ୍ୟଗୁଡ଼ିକ ସହିତ ଚୁକ୍ତି ବା ରାଜିନାମା ବଳରେ ବିଭିନ୍ନ ରାଜ୍ୟକୁ ନେଇ ୟୁନିଅନ ଗଠିତ ହୋଇନାହିଁ । ସମ୍ବିଧାନର କେନ୍ଦ୍ରପ୍ରବଣତା ନୀତିକୁ

ରାଜ୍ୟମାନେ ତେଣୁ ସମାଲୋଚନା କରି ଆସିଛନ୍ତି । ଅପରପକ୍ଷରେ, ଏହି ସୁଯୋଗରେ କେନ୍ଦ୍ର ସରକାର ମଧ୍ୟ ରାଜ୍ୟ ସରକାରମାନଙ୍କର କ୍ଷମତାକୁ ସଙ୍କୁଚିତ କରି, ରାଜ୍ୟଗୁଡ଼ିକ ଯେପରି ଅନବରତ କେନ୍ଦ୍ରର ଗୋଡ଼ାଣିଆ ହୋଇ ରହିବେ, ସେଥିପାଇଁ ମଧ୍ୟ ଉଦ୍ୟମ ଜାରି ରଖି ଆସିଛନ୍ତି । ମାତ୍ର କ୍ଷମତାର ବିକେନ୍ଦ୍ରୀକରଣ ପ୍ରକ୍ରିୟା ଠିକ୍ ଭାବେ ହୋଇପାରିନାହିଁ । ଭାରତରେ ଜନସଚେତନତା ଯୋଗୁଁ ଅତୀତରେ ନିରଙ୍କୁଶ ସଂଖ୍ୟା ଗରିଷ୍ଠତା ଲାଭ କରି କ୍ଷମତାସୀନ ହେଉଥିବା ଜାତୀୟ ରାଜନୀତିକ ଦଳଗୁଡ଼ିକର ଆଧିପତ୍ୟ ଓ ପ୍ରଭୁତ୍ୱ ମଧ୍ୟ ହ୍ରାସ ପାଇଛି । ବିଭିନ୍ନ ରାଜ୍ୟର ଆଞ୍ଚଳିକ ରାଜନୀତିକ ଦଳଗୁଡ଼ିକସହ ବୁଝାମଣା ସ୍ଥାପନ ଜରିଆରେ ଏବେ କେନ୍ଦ୍ରରେ ମିଳିତ ସରକାର ଗଠନ ପ୍ରକ୍ରିୟା ସମ୍ଭବ ହୋଇଥିଲେ ହେଁ ଆଇନ ପ୍ରଣୟନ ଓ ରାଜସ୍ୱ ଆଦାୟ କ୍ଷେତ୍ରରେ କେନ୍ଦ୍ର ସରକାରଙ୍କ ଆଧିପତ୍ୟ ରହୁଥିବାରୁ ରାଜ୍ୟମାନେ ଘୋର ଅସୁବିଧାର ସମ୍ମୁଖୀନ ହେଉଛନ୍ତି । କେନ୍ଦ୍ରର ବିନା ସହାୟତାରେ ରାଜ୍ୟର ଉନ୍ନତି କରୁଥିବା ରାଜ୍ୟ ସରକାରମାନଙ୍କୁ ୩୫୬ ଧାରା ବଳରେ ଅଯଥାରେ ରାଷ୍ଟ୍ରପତି ଶାସନ ଜାରି କରିବା ଲାଗି କେନ୍ଦ୍ର ସରକାରଙ୍କ ପକ୍ଷରୁ ଧମକ ଦିଆଯାଉଛି । ଅତୀତରେ ଏହି ଧାରାର ଅପପ୍ରୟୋଗ ବହୁଳ ଭାବେ ଅବଶ୍ୟ କରାଯାଉଥିଲା । ମାତ୍ର କେନ୍ଦ୍ର ସରକାର ଏବେ ଏହି ଧାରାର ପ୍ରୟୋଗ ପାଇଁ ସମ୍ଭବତଃ ଭୟ କରୁଛନ୍ତି । ନିକଟରେ କେନ୍ଦ୍ର ସରକାର ଆମ ରାଜ୍ୟରେ ଏହି ଧାରାର ପ୍ରୟୋଗ ପାଇଁ ଧମକ ଦେଇ ପୁଣି ନିଜ ନିଷ୍ପତ୍ତିରୁ ଓହରି ଯାଇଥିବାର କାରଣ ଆଉ କ'ଣ ହୋଇପାରେ ?

ରାଜ୍ୟମାନଙ୍କୁ କେନ୍ଦ୍ର ସରକାର ଅବହେଳା କରି ଆସୁଥିବା ସମ୍ବନ୍ଧରେ ବିଭିନ୍ନ ସମୟରେ ରାଜ୍ୟମାନେ ଅଭିଯୋଗ କରିଆସିଛନ୍ତି । ନବେ ଦଶକରେ ସ୍ୱର୍ଗୀୟ ବିଜୁ ପଟ୍ଟନାୟକ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ଥିବାବେଳେ ରାଜ୍ୟମାନଙ୍କୁ ଆର୍ଥିକ ସ୍ୱାଧୀନତା ଦିଆଯିବା ବିଷୟରେ ସ୍ୱର ଉତ୍ତୋଳନ କରି ସାରା ଦେଶର ଦୃଷ୍ଟି ଆକର୍ଷଣ କରିଥିଲେ । ଓଡ଼ିଶା ଓ ଓଡ଼ିଶାବାସୀଙ୍କପ୍ରତି କେନ୍ଦ୍ର ସରକାରଙ୍କ ଅବହେଳା ବିରୋଧରେ ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ସମେତ ସାଂସଦ ଶ୍ରୀ ପ୍ୟାରୀମୋହନ ମହାପାତ୍ର ଏବେ ବି ଦୃଢ଼ ସ୍ୱର ଉତ୍ତୋଳନ କରି ଚାଲିଛନ୍ତି । ତେବେ ଭାରତରେ ସାଧାରଣତନ୍ତ୍ରର ଗତି କେଉଁଆଡ଼େ ?

ଆମ ସମ୍ବିଧାନରେ ପୂର୍ବରୁ ଧର୍ମନିରପେକ୍ଷତା କଥା ନଥିଲା । ୧୯୭୬ ମସିହାରେ ୪୨ତମ ସମ୍ବିଧାନ ସଂଶୋଧନ ଆଇନ ବଳରେ ଏ ବିଷୟଟିକୁ ସମ୍ବିଧାନଭୁକ୍ତ କରାଯାଇଛି । ମାତ୍ର ଦୀର୍ଘ ୩୨ ବର୍ଷର ବ୍ୟବଧାନ ପରେ ଏହା ମଧ୍ୟ ଆମମାନଙ୍କ ପାଇଁ ନିରର୍ଥକ ବୋଲି ମନେ ହୋଇଛି । ଆମର ସରକାର ବା ଶାସନନୀତି ନିର୍ଦ୍ଦିଷ୍ଟ କୌଣସି ଧର୍ମଧାରାଦ୍ୱାରା ପ୍ରଭାବିତ ହୋଇ ନଥିଲେ ହେଁ, ଆମରି ମଧ୍ୟରୁ ଅନେକ ସମାଜରେ ଯେପରି ଧର୍ମ ନାମରେ ଆତଙ୍କ, ଅଶାନ୍ତି ଓ ବିଭ୍ରାନ୍ତି ସୃଷ୍ଟି କରି ଚାଲିଛନ୍ତି ତାହା ଅତ୍ୟନ୍ତ ଦୁର୍ଭାଗ୍ୟଜନକ ବୋଲି ମନେ ହୋଇଥାଏ ।

ପଶ୍ଚିମ, ଉତ୍ତର-ପୂର୍ବ ଓ ଦକ୍ଷିଣ ଭାରତରେ ସର୍ବୋଚ୍ଚ ଅଦାଲତ ବା ସୁପ୍ରିମକୋର୍ଟଙ୍କ ଶାଖା ସ୍ଥାପନ ଲାଗି କେନ୍ଦ୍ର ସରକାର ସମ୍ବିଧାନର ସଂଶୋଧନ କରିବା ଲାଗି ଆଇନ ଓ ନ୍ୟାୟ ବିଷୟକ ସଂସଦୀୟ କମିଟି ନିକଟରେ ପାର୍ଲିଆମେଣ୍ଟକୁ ପ୍ରଦାନ କରିଥିବା ତାଙ୍କର ୩୨ତମ ରିପୋର୍ଟରେ ଉଲ୍ଲେଖ କରିଛନ୍ତି । ଗତ ଥର ମଧ୍ୟ ସଂସଦୀୟ କମିଟି ପାର୍ଲିଆମେଣ୍ଟକୁ ଦେଇଥିବା ତାଙ୍କର ରିପୋର୍ଟରେ ଏ ବିଷୟରେ ଉଲ୍ଲେଖ କରିଥିଲେ । ଯଦି ସେପରି ହୁଏ, ତେବେ ଗରିବ ଲୋକେ ବିଭିନ୍ନ ମାମଲାରେ ଖର୍ଚ୍ଚାନ୍ତ ହୋଇ ବାରମ୍ବାର ନୂଆଦିଲ୍ଲୀରେ ଥିବା ଭାରତର ସର୍ବୋଚ୍ଚ ଅଦାଲତକୁ ଆଉ ଅନ୍ତତଃ ଦୌଡ଼ନ୍ତେ ନାହିଁ । ସୁପ୍ରିମକୋର୍ଟଙ୍କ ପ୍ରଧାନ କାର୍ଯ୍ୟାଳୟ ଯଦିଓ ନୂଆଦିଲ୍ଲୀରେ ରହିଛି, ରାଷ୍ଟ୍ରପତିଙ୍କ ଅନୁମତିକ୍ରମେ ଭାରତର ପ୍ରଧାନ ବିଚାରପତି ଦେଶର ଅନ୍ୟ ଯେ କୌଣସି ସ୍ଥାନରେ ମଧ୍ୟ ସୁପ୍ରିମକୋର୍ଟଙ୍କ ବୈଠକ କରିପାରନ୍ତେ । ଆମ ସମ୍ବିଧାନରେ ଏ ବ୍ୟବସ୍ଥା ଥିଲେ ମଧ୍ୟ ଆମ ସାଧାରଣତନ୍ତ୍ରର ୫୮ ବର୍ଷ ପରେ ତାହା ମଧ୍ୟ ଏ ପର୍ଯ୍ୟନ୍ତ ହୋଇପାରିନାହିଁ ।

# ଉତ୍କଳ ପ୍ରସଙ୍ଗ

**The Utkal Prasanga**
**January 2009**

୬୫ ଭାଗ | ୬ଷ୍ଠ ସଂଖ୍ୟା | ପୌଷ-ମାଘ | ଜାନୁଆରୀ - ୨୦୦୯

**ପ୍ରଦୀପ୍ତ କୁମାର ମହାପାତ୍ର**
କମିଶନର ତଥା ଶାସନ ସଚିବ

**ବୈଷ୍ଣବ ପ୍ରସାଦ ମହାନ୍ତି**
ନିର୍ଦ୍ଦେଶକ

**ଗୁରୁକଲ୍ୟାଣ ମହାପାତ୍ର**
ମୁଖ୍ୟ ସମ୍ପାଦକ

ସମ୍ପାଦନା ସହଯୋଗୀ
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**
**ସଚ୍ଚିଦାନନ୍ଦ ବାରିକ**

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
**ମାନସ ନାୟକ**
ଫଟୋ :
**ରାଜୁ ସିଂ ଓ ମନୋରଂଜନ ମହାନ୍ତି**

କମ୍ପ୍ୟୁଟର ସେଟିଂ ଓ ଡ଼ିଜାଇନିଂ
**ମନୋଜ କୁମାର ପାତ୍ର**
**ହେମନ୍ତ କୁମାର ସାହୁ**

**ପ୍ରତିଖଣ୍ଡ : ଟ.୫.୦୦**

---

ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧

*Chief Editor : Gurukalyan Mohapatra*
ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissagov.nic.in
ଫୋନ : ୦୬୭୪-୨୫୩୦୨୧୧

# ସୂଚୀ



# ସାଧାରଣତନ୍ତ୍ର ଦିବସ -୨୦୦୯ ଅବସରରେ
# ଓଡ଼ିଶାର ମହାମାନ୍ୟ ରାଜ୍ୟପାଳ
# **ଶ୍ରୀ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ**
# **ବାର୍ତ୍ତା**

ପ୍ରିୟ ଭାଇ ଓ ଭଉଣୀମାନେ,

ଆଜି ଆମେ ଦେଶରେ ସାଧାରଣତନ୍ତ୍ରର ୫୯ତମ ଜନ୍ମ ବାର୍ଷିକୀ ପାଳନ କରୁଛୁଁ । ପ୍ରତ୍ୟେକ ଭାରତୀୟମାନଙ୍କ ପାଇଁ ଏହି ଶୁଭ ଐତିହାସିକ ଅବସର ଏକ ଗୌରବ ଓ ଆନନ୍ଦର ଦିନ । ଏହି ଅବସରରେ ଆପଣମାନଙ୍କୁ ମୋର ଆନ୍ତରିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି ।

୧୯୫୦ ମସିହାର ଏହି ଶୁଭ ଅବସରରେ ଆମର ଜାତୀୟ ନେତା ଓ ସମ୍ବିଧାନର ମହାନ୍ ପ୍ରଣେତାମାନେ ଆମକୁ ଏହି ସମ୍ବିଧାନ ପ୍ରଦାନ କରିଥିଲେ । ସମ୍ବିଧାନ ମୁଖବନ୍ଧରେ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ନ୍ୟାୟ, ଚିନ୍ତାଧାରା, ଭାବ ପ୍ରକାଶ ଓ ବିଶ୍ୱାସ, ଉପାସନାର ସ୍ୱାଧୀନତା, ସମସ୍ତଙ୍କୁ ସମାନ ମର୍ଯ୍ୟାଦା ଓ ସୁଯୋଗ ଏବଂ ସମାଜର ପ୍ରତ୍ୟେକ କ୍ଷେତ୍ରରେ ମୈତ୍ରୀର ବିକାଶ ପାଇଁ ଲକ୍ଷ୍ୟ ରଖାଯାଇଛି ।

ଯେଉଁ ଦେଶ ପ୍ରେମୀମାନେ ବ୍ରିଟିଶ ଶାସନରୁ ମାତୃଭୂମିକୁ ମୁକ୍ତ କରି ଆମ୍ଭମାନଙ୍କୁ ଏକ ସ୍ୱାଧୀନ ଦେଶ ପ୍ରଦାନ କରିବା ପାଇଁ ମହାନ୍ ତ୍ୟାଗ ଓ ବଳିଦାନ କରିଥିଲେ, ଆଜିର ଦିନରେ ସେମାନଙ୍କପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁଁ । ଭାରତକୁ ଏକ ସାର୍ବଭୌମ, ସମାଜବାଦୀ, ଧର୍ମ ନିରପେକ୍ଷ ଓ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ କରିବା ସହିତ ନାଗରିକର ସମ୍ମାନ ଓ ଜାତୀୟ ଐକ୍ୟ ପାଇଁ ଲକ୍ଷ୍ୟ ରଖିଥିବା ଭାରତୀୟ ସମ୍ବିଧାନ ପ୍ରଣେତାମାନଙ୍କୁ ମଧ୍ୟ ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛୁଁ । ଭାରତକୁ ପୃଥିବୀର ଏକ ଶ୍ରେଷ୍ଠ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ କରିବା ପାଇଁ ଯେଉଁମାନେ ଅସୀମ ତ୍ୟାଗ ସ୍ୱୀକାର କରିଛନ୍ତି ସେମାନଙ୍କୁ ଆଜିର ଦିବସରେ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁଁ ।

ମହାତ୍ମା ଗାନ୍ଧୀଙ୍କ ଅହିଂସା ଓ ସତ୍ୟାଗ୍ରହରେ ଅନୁପ୍ରାଣିତ ହୋଇ ଓଡ଼ିଶାର ଯେଉଁ କୃତୀ ସନ୍ତାନମାନେ ବ୍ରିଟିଶ ଶାସନ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ ସେମାନଙ୍କ ପାଇଁ ଆମ୍ଭେ ଗର୍ବିତ । ସେମାନଙ୍କ ଦେଶାତ୍ମବୋଧ ଓ ଅବିଶ୍ରାନ୍ତ ସଂଗ୍ରାମ ପରବର୍ତ୍ତୀ ବଂଶଧରମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହିବ ଓ ସେମାନଙ୍କୁ ମାତୃଭୂମି ପାଇଁ ସମର୍ପିତ ହେବାକୁ ପ୍ରେରଣା ଯୋଗାଇବ ।

ଆଜିର ଦିନ ଆମ ସମସ୍ତଙ୍କୁ ଆତ୍ମ ନିରୀକ୍ଷଣ ପାଇଁ ସୁଯୋଗ ଆଣି ଦେଇଛି । ଆମେ କି ପ୍ରକାର ସଫଳତା ହାସଲ କରିଛୁଁ ଓ ଆମର ଐକ୍ୟ ଓ ସଂହତି ଏବଂ ଜନସାଧାରଣଙ୍କ ଜୀବନଧାରଣର ମାନବୃଦ୍ଧି ପାଇଁ ଆମକୁ ଆଉ କ'ଣ କରିବା ଦରକାର ସେ ସଂପର୍କରେ ଆତ୍ମ ନିରୀକ୍ଷଣ କରିବାକୁ ହେବ ।

ଓଡ଼ିଶା ଆମ ଦେଶର ଏକ ସଂସ୍କୃତିସମୃଦ୍ଧ ରାଜ୍ୟ । ଏହାର କଳା, ସଂଗୀତ ଓ ନୃତ୍ୟର ନିଜସ୍ୱ ସ୍ୱତନ୍ତ୍ରତା ଓ ଆବେଦନ ରହିଛି । ଓଡ଼ିଶୀ ନୃତ୍ୟ ଓ ସଂଗୀତ ସାରା ପୃଥିବୀର ଲୋକମାନଙ୍କୁ ଅଭିଭୂତ କରିଆସୁଛି ।

ମନ୍ଦିର-ସ୍ଥାପତ୍ୟ, ପଟ୍ଟଚିତ୍ର, ଆଦିବାସୀଚିତ୍ର, ବାଲିଶିଳ୍ପ ଓ କଳା ଆମର ହସ୍ତଶିଳ୍ପୀ ଓ ବୁଣାକାରମାନଙ୍କର ଅପୂର୍ବ କଳା କୁଶଳତାର ନିଦର୍ଶନ । ଓଡ଼ିଶାର ସମ୍ବଲପୁରୀ, ଛଉ, ପାଇକ ସାମରିକ ନୃତ୍ୟ, ଦଣ୍ଡ ନୃତ୍ୟ, ଘୁମୁରା ଓ ଆଉ ଅନେକ ଲୋକନୃତ୍ୟ ଦର୍ଶକମାନଙ୍କର ମନକୁ ମୁଗ୍ଧ କରିଥାଏ ।

ଓଡ଼ିଶାକୁ ଦେଶର ଏକ ଉନ୍ନତ ରାଜ୍ୟରେ ପରିଣତ କରିବା ପାଇଁ ଆମର ପ୍ରତିବଦ୍ଧତାକୁ ଆଜି ଆମେ ପୁନର୍ବାର ଦୋହୋରାଇବା । ଅର୍ଥନୈତିକ ବିକାଶ ସହିତ, ସାମାଜିକ ଉନ୍ନତିଦ୍ୱାରା ଆମର ଜନସାଧାରଣ ବିଭିନ୍ନ କ୍ଷେତ୍ରରେ ହେଉଥିବା ଅଗ୍ରଗତିର ସୁଫଳ ପାଇପାରିବେ ।

ଓଡ଼ିଶାକୁ ଅଗ୍ରଗତି ଓ ସମୃଦ୍ଧି ପଥରେ ଆଗେଇ ନେଇ ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ପାଇଁ ହାତ ମିଳାଇବାକୁ ଆଜିର ଏହି ଶୁଭ ଅବସରରେ ମୁଁ ଆପଣମାନଙ୍କୁ ବିନମ୍ର ନିବେଦନ କରୁଛି ।

ଜୟହିନ୍ଦ୍



# ସାଧାରଣତନ୍ତ୍ର ଦିବସ -୨୦୦୯ ଅବସରରେ
# ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ
# **ଶ୍ରୀ ନବୀନ ପଟ୍ଟନାୟକଙ୍କ**
# ବାର୍ତ୍ତା

**ପ୍ରିୟ ଭାଇ ଓ ଭଉଣୀମାନେ,**

ପବିତ୍ର ସାଧାରଣତନ୍ତ୍ର ଦିବସ ପାଳନର ଶୁଭ ଅବସରରେ ମୁଁ ଆପଣମାନଙ୍କୁ ମୋର ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ସାଧାରଣତନ୍ତ୍ର ଦିବସ ଭାରତ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଦିବସ । ଏହି ଦିନ ଆମ ଦେଶର ସମ୍ବିଧାନ କାର୍ଯ୍ୟକାରୀ ହୋଇଥିଲା । ଏକ ପ୍ରଜାତନ୍ତ୍ର ଭାବରେ ଭାରତ ବିଶ୍ୱ ଦରବାରରେ ଗୌରବ ଲାଭ କରିଥିଲା । ଏହି ଅବସରରେ ଆମର ସମ୍ବିଧାନ ରଚନା କରିଥିବା ଭାରତର ବରପୁତ୍ରମାନଙ୍କପ୍ରତି ମୁଁ ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଦୁଇ ଶହ ବର୍ଷର ବ୍ରିଟିଶ ଶାସନ ପରେ ଭାରତ ସ୍ୱାଧୀନ ହେଲା । ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଅଗଣିତ ସଂଗ୍ରାମୀଙ୍କ ତ୍ୟାଗ ଓ ବଳିଦାନ ଆଜି ଆମ ପାଇଁ ସ୍ୱାଧୀନତା ଆଣି ଦେଇଛି । ମହାତ୍ମା ଗାନ୍ଧୀଙ୍କ ଆନ୍ଦୋଳନ ପୂର୍ବରୁ ମଧ ବ୍ରିଟିଶ ଶାସନ ବିରୋଧରେ ବିଭିନ୍ନ ସମୟରେ ସ୍ୱର ଉଠିଥିଲା । ଏହି ସଂଗ୍ରାମରେ ଅନେକ ଶହୀଦ ହୋଇଛନ୍ତି । ସ୍ୱାଧୀନତା ସଂଗ୍ରାମର ବିଭିନ୍ନ ଫେଜ୍‌ରେ ଓଡ଼ିଶାର ସଂଗ୍ରାମୀମାନେ ଯୋଗଦାନ କରି ମୁକ୍ତି ଆନ୍ଦୋଳନକୁ ଶକ୍ତିଶାଳୀ କରିଛନ୍ତି । ସ୍ୱାଧୀନତା ସଂଗ୍ରାମୀମାନଙ୍କ ତ୍ୟାଗ ଓ ଦେଶପ୍ରେମର ତୁଳନା ନାହିଁ । ଆଜି ଏହି ପବିତ୍ର ଦିବସ ଅବସରରେ ମୁଁ ସେହି ଅମର ସଂଗ୍ରାମୀମାନଙ୍କପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ଆମର ଏହି ବହୁମୂଲ୍ୟ ସ୍ୱାଧୀନତାର ସୁରକ୍ଷା ତଥା ଜାତୀୟ ଏକତା ପାଇଁ ସମସ୍ତେ ମିଳିମିଶି କାମ କଲେ ତାହା ହେବ ଆମର ସଂଗ୍ରାମୀମାନଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ।

ଭାରତର ସମ୍ବିଧାନ ଗଣତନ୍ତ୍ର, ନ୍ୟାୟ, ସମତା ଓ ଧର୍ମନିରପେକ୍ଷତା ଉପରେ ଗୁରୁତ୍ୱ ଦେଇଆସିଛି । ଗଣତନ୍ତ୍ର ହେଉଛି ଭାରତର ସବୁଠାରୁ ବଡ଼ ଶକ୍ତି । ଧର୍ମ ନିରପେକ୍ଷତା ଭାରତୀୟ ସଂସ୍କୃତିର ଆତ୍ମା । ଭାରତୀୟ ସଂସ୍କୃତି ଏ ଦେଶର କୋଟି କୋଟି ଜନତାକୁ ଏକତାର ସୂତ୍ରରେ ବାନ୍ଧି ରଖିଛି । ବହୁ ଧର୍ମ, ବହୁ ଭାଷାକୁ ନେଇ ଗଠିତ ଆମର ଭାରତୀୟ ସମାଜ ଆମ ସଂସ୍କୃତିକୁ ବହୁ ଭାବରେ ସମୃଦ୍ଧ କରିଆସିଛି । ଭାରତୀୟ ଚିନ୍ତା ଓ ଚେତନାକୁ ଉଦାର ମାନବିକତାରେ ଶକ୍ତିଶାଳୀ କରିଛି ।

ଆମ ସମ୍ବିଧାନ ଆଇନର ଶାସନ ପାଇଁ ମାର୍ଗ ଦେଖାଇଆସିଛି । ଆଜି ଆମ ଦେଶରେ ଗଣତନ୍ତ୍ର ସଫଳ ହୋଇଛି । ଏହି ସଫଳତାରେ ଭାରତର ଅଗଣିତ ଜନତାଙ୍କ ଦାୟିତ୍ୱବୋଧ ସହିତ ଆମ ସମ୍ବିଧାନର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଆଇନର ଶାସନ ପାଇଁ ଆମେ ସମସ୍ତେ କାମ କରୁଛୁ । ଜନସାଧାରଣ ହେଉଛନ୍ତି ସବୁ କ୍ଷମତାର ଆଧାର । ନାଗରିକ ଅଧିକାରର ସୁରକ୍ଷା ଓ ଦେଶର ବିକାଶ ଶାସନର ମୂଳ ଲକ୍ଷ୍ୟ ।

ଆଜି ଦେଶରେ ଗଣତନ୍ତ୍ର ଚେତନାର ବିକାଶ ଘଟିଛି । ବିକାଶ କାମରେ ଜନସାଧାରଣଙ୍କ ସହଯୋଗ ବଢ଼ିଛି । ପୁରୁଷ ଓ ମହିଳା ସମସ୍ତେ ଆଜି ଦେଶ ପାଇଁ କାମ କରିବାକୁ ଆଗେଇ ଆସିଛନ୍ତି । ସମସ୍ତେ ନିଜ ନିଜ କ୍ଷେତ୍ରରେ ସେମାନଙ୍କ ପ୍ରତିଭା ଦେଖାଇପାରୁଛନ୍ତି । ଦେଶ ପାଇଁ କାମ କରିବାର ଗୌରବ ସ୍ୱତନ୍ତ୍ର । ଦେଶପ୍ରତି ଥିବା ଆମର ପବିତ୍ର ଦାୟିତ୍ୱକୁ ଆମେ ଠିକ୍ ଭାବେ ପାଳନ କରିପାରିଲେ ଏକ ସମୃଦ୍ଧ ଓ ଶକ୍ତିଶାଳୀ ଭାରତ ଗଠନ ହୋଇପାରିବ ।

ଆମ ଓଡ଼ିଶା ଏକ ଶାନ୍ତିପ୍ରିୟ ରାଜ୍ୟ । ଓଡ଼ିଶା ସବୁବେଳେ ଶାନ୍ତିର ବାର୍ତ୍ତା ପ୍ରଚାର କରିଆସିଛି । ଶାନ୍ତି ଓ ସଦ୍‌ଭାବ ଆମ ସଂସ୍କୃତିର ମୁଖ୍ୟ ଆଧାର । ଏହାକୁ ବଜାୟ ରଖିବା ପାଇଁ ସମସ୍ତେ କାମ କରିବା ଦରକାର ।

ଅତୀତରେ ଓଡ଼ିଶା ଏକ ସମୃଦ୍ଧ ରାଜ୍ୟ ଥିଲା । ଆମ କଳା ଓ ସଂସ୍କୃତି ବିଶ୍ୱରେ ଆମ ପାଇଁ ଏକ ସ୍ୱତନ୍ତ୍ର ପରିଚୟ ଆଣିଦେଇଥିଲା । ଆମ ସଂସ୍କୃତିର ଚିହ୍ନ ଆଜି ମଧ୍ୟ ସାଉଥ୍ ଇଷ୍ଟ ଏସିଆ ଦେଶମାନଙ୍କରେ ଦେଖିବାକୁ ମିଳେ । ଆମର ଅତୀତ ଗୌରବକୁ ଫେରାଇ ଆଣିବା ପାଇଁ ଆମକୁ କଠିନ ପରିଶ୍ରମ କରିବାକୁ ହେବ । ଓଡ଼ିଆ ସ୍ୱାଭିମାନକୁ ଜାଗ୍ରତ କରିବାକୁ ହେବ ।

ଆପଣମାନେ ଜାଣନ୍ତି, ଓଡ଼ିଶାରେ ପ୍ରଚୁର ଖଣିଜ ସଂପଦ ରହିଛି । ଓଡ଼ିଶାରେ କୃଷି ଓ ଉଦ୍ୟାନକୃଷିର ବିକାଶର ବିପୁଳ ସୁଯୋଗ ରହିଛି । ଆମର ନେଚୁରାଲ ରିସୋରସେସ୍ ଓ ଦକ୍ଷ ମାନବ ସମ୍ବଳକୁ ନେଇ ଆମେ ଓଡ଼ିଶାକୁ ଦେଶର ଏକ ଆଗୁଆ ରାଜ୍ୟରେ ପରିଣତ କରିପାରିବା । ସମସ୍ତେ ନିଜ ନିଜ କ୍ଷେତ୍ରରେ ରାଜ୍ୟର ଉନ୍ନତି ପାଇଁ ଉଦ୍ୟମ କଲେ ସମୃଦ୍ଧ ଓଡ଼ିଶାର ସ୍ୱପ୍ନ ସାକାର ହୋଇପାରିବ । ଆସନ୍ତୁ, ଆଜିର ଏହି ପବିତ୍ର ଦିନରେ ସମସ୍ତେ ସଂକଳ୍ପବଦ୍ଧ ହୋଇ ଏ ଦିଗରେ କାମ କରିବା ।

ଜୟହିନ୍ଦ୍

# ଶ୍ରଦ୍ଧାଞ୍ଜଳି



ବୀର ସୁରେନ୍ଦ୍ର ସାଏ



ବକ୍ସି ଜଗବନ୍ଧୁ






ଚାଖି ଖୁଣ୍ଟିଆ



ନେତାଜୀ ସୁଭାଷ ବୋଷ



# ଆତଙ୍କବାଦ ବିରୋଧରେ ଲଢ଼ିବାକୁ ପଡ଼ିବ

ନବୀନ ପଟ୍ଟନାୟକ

ଗତ ୨୦୦୮ ଅକ୍ଟୋବର ୧୩ ତାରିଖରେ ନୂଆଦିଲ୍ଲୀଠାରେ ଅନୁଷ୍ଠିତ ଜାତୀୟ ସଂହତି ପରିଷଦ ବୈଠକରେ ଆମ ମୁଖ୍ୟମନ୍ତ୍ରୀଙ୍କଦ୍ୱାରା ପ୍ରଦତ୍ତ ଅଭିଭାଷଣର ଓଡ଼ିଆ ରୂପାନ୍ତର ।

ମାନନୀୟ ପ୍ରଧାନମନ୍ତ୍ରିଜୀ

ମାନନୀୟ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରିଜୀ

ମାନନୀୟ ମୁଖ୍ୟମନ୍ତ୍ରୀବୃନ୍ଦ ଓ ବନ୍ଧୁଗଣ,

ଯେତେବେଳେ ଦେଶର ବହୁ ଅଞ୍ଚଳ ଛୋଟବଡ଼ ବିଭିନ୍ନ ପ୍ରକାରର ସାଂପ୍ରଦାୟିକ ଘଟଣା ଦ୍ୱାରା କବଳିତ ହୋଇଛି, ସେତେବେଳେ ଜାତୀୟ ସଂହତି ପରିଷଦର ବୈଠକ ଡକାଯିବା ବାସ୍ତବିକ ସମୟୋଚିତ । ବର୍ତ୍ତମାନ ଆତଙ୍କବାଦ ଓ ଚରମବାଦ ସେମାନଙ୍କ କୁତ୍ସିତ ରୂପ ପ୍ରଦର୍ଶନ କରି ଚାଲିଛନ୍ତି । ଏପରିକି ଦେଶର ରାଜଧାନୀ ସେଥିରୁ ମୁକ୍ତ ରହିପାରିନି । ସାଂପ୍ରଦାୟିକତା, ଜାତିଆଣଭାବ ଓ ଆତଙ୍କବାଦଦ୍ୱାରା ସୃଷ୍ଟ ସୁରକ୍ଷାହୀନ ବାତାବରଣ ମଧ୍ୟରେ ଦେଶର ହଜାର ହଜାର ନିବେଶକଙ୍କ ସାମନାରେ ଆର୍ଥିକ-ନିରାପତ୍ତା-ଅଭାବଜନିତ ବିପଦର ଛାୟା ଦେଖିବାକୁ ମିଳୁଛି । ଏଭଳି ଏକ କ୍ଳେଶାତ୍ମକ ସମୟରେ ଘୃଣା, ଅସୂୟା ଓ ପାରସ୍ପରିକ ପ୍ରତିଅଭିଯୋଗର ବିଚାରଧାରା ବିରୁଦ୍ଧରେ ସମଗ୍ର ଦେଶକୁ ଲଢ଼ିବାକୁ ପଡିବ । ଜାତୀୟ ସଂହତି ପରିଷଦ ହେଉଛି ଦେଶର ସର୍ବୋଚ୍ଚ ମଞ୍ଚ, ଯେଉଁଠି ଆମେ ଶାନ୍ତି ଓ ସମୃଦ୍ଧି ପାଇଁ ଐକ୍ୟବଦ୍ଧ ହେବା ଲାଗି ଆମେ ସମସ୍ତେ ସଂକଳ୍ପ କରିବା ।

**ସାମାଜିକ ଢ଼ାଞ୍ଚା- ଜାତି ଓ ପରିଚୟର ବିଭାଜନ ଓ ବିଚ୍ଛିନ୍ନତା**

୨୦୦୧ ଜନଗଣନା ଅନୁଯାୟୀ ଓଡ଼ିଶାର ୩୮.୬୬ % ଜନସଂଖ୍ୟା ମଧ୍ୟରୁ ତଫସିଲଭୁକ୍ତ ଉପଜାତି ହେଉଛନ୍ତି ୨୨.୧୩% ଓ ତଫସିଲଭୁକ୍ତ ଜାତିର ହେଉଛନ୍ତି ୧୬.୫୩% ଲୋକ । ତଫସିଲଭୁକ୍ତ ଉପଜାତି ମଧ୍ୟରେ ଗୋଷ୍ଠୀ ସଂଖ୍ୟା ୬୨, ଯାହା ମଧ୍ୟରେ ୧୩ଟି ଆଦିମ ଅଧିବାସୀ ଗୋଷ୍ଠୀ ଅନ୍ତର୍ଭୁକ୍ତ । ତଫସିଲଭୁକ୍ତ ଜାତିଙ୍କ ମଧ୍ୟରେ ଜାତି ସଂଖ୍ୟା ୯୩ ।

**୨୦୦୧ ଜନଗଣନା ଅନୁଯାୟୀ ରାଜ୍ୟର ମୋଟ ଜନସଂଖ୍ୟାର ୫.୬୪ % ହେଉଛନ୍ତି ସଂଖ୍ୟାଲଘୁ ସଂପ୍ରଦାୟର ଲୋକ ଏବଂ ତା ମଧ୍ୟରେ ଖ୍ରୀଷ୍ଟିୟାନଙ୍କ ସଂଖ୍ୟା ୨.୪୪ % ଓ ମୁଲସମାନଙ୍କ ସଂଖ୍ୟା ୨.୦୭ % ।**

ସାଧାରଣ ଭାବେ ଓଡ଼ିଶାର ବିଭିନ୍ନ ସଂପ୍ରଦାୟ ମଧ୍ୟରେ ବରାବର ଶାନ୍ତି ଓ ଏକତା ରହି ଆସିଛି । ମାତ୍ର ବେଳେବେଳେ ଜାତିଗତ ତିକ୍ତ ସଂପର୍କ, ବିଶେଷ କରି କେତେକ ତଫସିଲଭୁକ୍ତ ଉପଜାତି ଓ ତଫସିଲଭୁକ୍ତ ଜାତି ଗୋଷ୍ଠୀ ମଧ୍ୟରେ ତିକ୍ତତା ଯୋଗୁଁ ରାଜ୍ୟର କେତେକ ଅଞ୍ଚଳରେ ଗଣ୍ଡଗୋଳ ସୃଷ୍ଟି ହୋଇଛି ଏବଂ ରାଜ୍ୟ ସରକାର ଦେଶର ଆଇନ ଅନୁଯାୟୀ ଦୃଢ଼ତାର ସହିତ ସେ ସବୁ ଗଣ୍ଡଗୋଳର ସମାଧାନ କରିଛନ୍ତି ।

**ଅର୍ଥନୈତିକ ବିକାଶ- ନ୍ୟାୟୋଚିତ ଉନ୍ନୟନ ଓ ଆଞ୍ଚଳିକ ଅସମତୁଲତାର ଦୂରୀକରଣ**

**ଓଡ଼ିଶା ଅର୍ଥ ବ୍ୟବସ୍ଥାର କାର୍ଯ୍ୟଧାରା :**

ଓଡ଼ିଶାର ଅର୍ଥନୈତିକ ଉଦ୍ୟମ ଅଧିକ ସଂପ୍ରସାରଣଭିତ୍ତିକ ତଥା ସମଷ୍ଟିକୃତ ସମୃଦ୍ଧିର ଲକ୍ଷ୍ୟ ନେଇ ଓ ଯଥାଶୀଘ୍ର ଦାରିଦ୍ର୍ୟ ହ୍ରାସ ଲାଗି ନିର୍ଦ୍ଦେଶିତ । ୨୦୦୨ ରୁ ୨୦୦୭ ଯାଏ ଦଶମ ଯୋଜନା କାଳରେ ହାରାହାରି ଜାତୀୟ ଅଭିବୃଦ୍ଧିର ବାର୍ଷିକ ହାର (୧୯୯୯-୨୦୦୦ ମୂଲ୍ୟାନୁଯାୟୀ) ୭.୭୭% ହୋଇଥିବା-ବେଳେ, ଅଷ୍ଟମ ଯୋଜନା ପାଇଁ ହାରାହାରି କ୍ଷେତ୍ରୀୟ ବାର୍ଷିକ ଅଭିବୃଦ୍ଧି ହାର ୧୯୯୨ରୁ ୯୭ରେ, ନବମ ଯୋଜନା ପାଇଁ ୧୯୯୭ରୁ ୨୦୦୨ରେ ଏବଂ ଦଶମ ଯୋଜନାରେ ୨୦୦୨ରୁ ୨୦୦୭ରେ ନିମ୍ନୋକ୍ତ ଟେବୁଲ-କ ତାଲିକାରେ ପ୍ରଦତ୍ତ ।

| ଟେବୁଲ-କ : ଓଡ଼ିଶାରେ ୧୯୯୨-୨୦୦୭ରେ କ୍ଷେତ୍ରୀୟ ବାର୍ଷିକ ଅଭିବୃଦ୍ଧି ହାର (%) | | | | |
|---|---|---|---|---|
| କ୍ଷେତ୍ର | ୮ମ ଯୋଜନା ୧୯୯୨-୯୭ (୧୯୯୯-୨୦୦୦ ଦରଦାମ୍‌ରେ) | ୯ମ ଯୋଜନା ୧୯୯୭-୨୦୦୦ (୧୯୯୯-୨୦୦୦ ଦରଦାମ୍‌ରେ) | ୧୦ମ ଯୋଜନା ୨୦୦୨-୦୭ (୧୯୯୯-୨୦୦୦ ଦରଦାମ୍‌ରେ) | ୧୦ମ ଯୋଜନା ଭାରତର ଉଦ୍ୟୋଗ ଭିତ୍ତିକ ଅଭିବୃଦ୍ଧି ହାର |
| କୃଷି | -୧.୨୨ | ୩.୯୭ | ୨.୮୧ | ୨.୩୦ |
| ଶିଳ୍ପ | ୨.୬୮ | ୪.୩୪ | ୧୫.୩୬ | ୮.୦୪ |
| ସେବା | ୫.୧୪ | ୭.୨୨ | ୮.୬୮ | ୯.୨୫ |
| ମୋଟ ଜି.ଏସ୍.ଡି.ପି | ୨.୦୨ | ୫.୨୦ | ୮.୫୯ | ୭.୭୭ |

୧୯୯୯-୨୦୦୦ରେ ଓଡ଼ିଶାରେ ଦାରିଦ୍ର୍ୟ ହାର ୪୭.୧୫%ରୁ ୭.୩% ଓ ୨୦୦୪-୦୫ରେ ୩୯.୯୦%କୁ ହ୍ରାସ ପାଇଛି ।

ମାତ୍ର ଓଡ଼ିଶାରେ ଦାରିଦ୍ର୍ୟଗ୍ରସ୍ତତା ଯୋଗୁଁ ଯଥେଷ୍ଟ ମାତ୍ରାର ଆଞ୍ଚଳିକ ଓ ସାମାଜିକ ବୈଷମ୍ୟ ରହିଛି । ସାଧାରଣତଃ ତଫସିଲଭୁକ୍ତ ଉପଜାତି ସବୁଠୁଁ ଦରିଦ୍ର ସାମାଜିକ ଗୋଷ୍ଠୀ ଓ ଓଡ଼ିଶାର ଦକ୍ଷିଣ ଭାଗ ଦରିଦ୍ରତମ ଅଞ୍ଚଳ । ଜାତୀୟ ସେମ୍ପଲ ସର୍ଭେର ଓଡ଼ିଶା ସଂପର୍କିତ ୧୯୯୯-୨୦୦୦ ତଥ୍ୟର ସମୀକ୍ଷାରୁ ଜଣାଯାଏ ଯେ ପ୍ରାୟ ୭୩.୧୦% ହେଉଛନ୍ତି ତଫସିଲଭୁକ୍ତ ଉପଜାତିର ଲୋକ ଓ ୫୨.୩୦% ତଫସିଲଭୁକ୍ତ ଜାତିର ଲୋକ ଦାରିଦ୍ର୍ୟ ସୀମାରେଖାର ନିମ୍ନରେ ରହିଛନ୍ତି ଏବଂ ତଫସିଲଭୁକ୍ତ ଉପଜାତି ଓ ଜାତି ଅଧ୍ୟୁଷିତ ଦକ୍ଷିଣ ଓଡ଼ିଶାର ୮୭.୧୪% ଲୋକ ଦାରିଦ୍ର୍ୟ ସୀମାରେଖାତଳେ ଅଛନ୍ତି ।

**ଗୁରୁତ୍ୱପୂର୍ଣ୍ଣ ଉନ୍ନୟନ କୌଶଳ ଓ ହସ୍ତକ୍ଷେପ**

**ଗୁରୁତ୍ୱପୂର୍ଣ୍ଣ ସାମାଜିକ-ଅର୍ଥନୈତିକ କ୍ଷେତ୍ରର ଅଭିବୃଦ୍ଧି ପ୍ରକ୍ରିୟା ଯେଭଳି ଅର୍ଥାଭାବର ସମ୍ମୁଖୀନ ନହୁଏ ସେଥିଲାଗି ସେଭଳି ଉଦ୍ୟୋଗ ଲାଗି ଯୋଜନାରେ ଅଧିକ ଅର୍ଥ ବରାଦ କରାଯାଇଛି । ୨୦୦୭-୦୮ର ବାର୍ଷିକ ଯୋଜନାରେ ୫୫୨୦ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଥିଲା, ଯାହାକି ୨୦୦୬-୦୭ ବାର୍ଷିକ ଯୋଜନାର ବ୍ୟୟଠାରୁ ୫୩% ଅଧିକ ।**

୨୦୦୮-୦୯ର ବାର୍ଷିକ ଯୋଜନା ପାଇଁ ବ୍ୟୟ ବରାଦ ଥିଲା ୭୫୦୦ କୋଟି ଟଙ୍କା ଯାହାକି ୨୦୦୭-୦୮ ବାର୍ଷିକ ଯୋଜନା ବ୍ୟୟଠାରୁ ୩୬% ଅଧିକ ।

* **ଅଧିକ ପ୍ରସାରଭିତ୍ତିକ ଓ ସମଷ୍ଟିକୃତ ଅଭିବୃଦ୍ଧି ଏବଂ ଦାରିଦ୍ର୍ୟର ଅଧିକ ସଂକୋଚନ ଲାଗି ଏକାଦଶ ଯୋଜନାରେ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।**
* **ଅର୍ଥନୈତିକ ଅଭିବୃଦ୍ଧି ହାରକୁ ବାର୍ଷିକ ୯% ଠାରୁ ଅଧିକ ବଢ଼ାଇବାକୁ ଏବଂ ଦାରିଦ୍ର୍ୟ ସଂକୋଚନ ହାରକୁ ଶତକଡା ୧୫ ଭାଗ କରିବାକୁ ୧୧ ତମ ଯୋଜନାରେ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ।**

ସମଷ୍ଟିକୃତ, ସଂପ୍ରସାରଣ ଭିତ୍ତିକ ଓ ଯଥେଷ୍ଟ ଅଭିବୃଦ୍ଧି ପାଇଁ କୃଷି ଓ ତଦାନୁସଙ୍ଗିକ କ୍ଷେତ୍ରର ବାର୍ଷିକ ଅଭିବୃଦ୍ଧିହାର ଯେଭଳି ୪%ରୁ ଅଧିକ ହେବ ସେଥିଲାଗି ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ।

* **ତଫସିଲଭୁକ୍ତ ଜାତି ଜାତି-ଜନଜାତି ଓ ସଂଖ୍ୟାଲଘୁ ସଂପ୍ରଦାୟ ସମେତ ଅତି ଦୁର୍ବଳ ଶ୍ରେଣୀର ଲୋକଙ୍କ ପାଇଁ ସ୍ୱତନ୍ତ୍ର ଉଦ୍ୟମ ।**

ତଫସିଲଭୁକ୍ତ ଉପଜାତି ଓ ଅସୁବିଧା ମଧ୍ୟରେ ଥିବା ଅନ୍ୟାନ୍ୟ ଶ୍ରେଣୀ ଓ ଅଞ୍ଚଳର ଲୋକଙ୍କ ଜୀବିକାର୍ଜନ ବିକାଶ ପାଇଁ କେତେକ ଯୋଜନା ଆରମ୍ଭ ହୋଇଛି । ସେଗୁଡ଼ିକ ହେଲା ଆଦିବାସୀ ସଶକ୍ତିକରଣ ଓ ଜୀବିକାର୍ଜନ କାର୍ଯ୍ୟକ୍ରମ (OTELP), ପଶ୍ଚିମ ଓଡ଼ିଶା ଗ୍ରାମୀଣ ଜୀବିକାର୍ଜନ କାର୍ଯ୍ୟକ୍ରମ (WORLP), ଉନ୍ନୟନ ଉଦ୍ୟମ ଲାଗି ଓଡ଼ିଶା ପାଣ୍ଠି (OFFDI)ର ଜାତୀୟ ନିଶ୍ଚିତ ଗ୍ରାମୀଣ ନିଶ୍ଚିତ ନିଯୁକ୍ତି ଯୋଜନା (NREGS) ଓ ଜୀବିକା ।

ସାଧାରଣ ଭାବେ ତଫସିଲଭୁକ୍ତ ଜାତି ଓ ଜନଜାତି ଗୋଷ୍ଠୀ ଓ ବିଶେଷ କରି ଜନଜାତି ମହିଳାଙ୍କ ମଧ୍ୟରେ ସାକ୍ଷରତା ବୃଦ୍ଧି ଲାଗି ସ୍ୱତନ୍ତ୍ର ଉଦ୍ୟମ କରାଯାଉଛି ।

ସଂଖ୍ୟାଲଘୁ ସଂପ୍ରଦାୟ ମଧ୍ୟରେ ସାକ୍ଷରତା ବୃଦ୍ଧି ପାଇଁ ସଂଖ୍ୟାଲଘୁ ଶିକ୍ଷାନୁଷ୍ଠାନଗୁଡିକ ଲାଗି ଗ୍ରାଣ୍ଟ ବ୍ୟବସ୍ଥାକୁ କୋହଳ କରାଯାଇଛି ।

ତଫସିଲଭୁକ୍ତ ଉପଜାତି ଓ ତଫସିଲଭୁକ୍ତ ଜାତିର ସାଧାରଣ ବର୍ଗଙ୍କ ମଧ୍ୟରେ ବିଶେଷ କରି ତଫସିଲଭୁକ୍ତ ଉପଜାତିର ମହିଳାଙ୍କ ମଧ୍ୟରେ ସାକ୍ଷରତା ହାର ବୃଦ୍ଧି ଲାଗି ସ୍ୱତନ୍ତ୍ର ଉଦ୍ୟମ ଜାରି ରହିଛି । ସଂଖ୍ୟାଲଘୁ ସଂପ୍ରଦାୟର ଶିକ୍ଷାନୁଷ୍ଠାନଗୁଡ଼ିକରେ ସାକ୍ଷରତା ଲାଗି ଅନୁଦାନକୁ କୋହଳ କରାଯାଇଛି ।

ଆଦିବାସୀ ଯୁବକମାନଙ୍କର ନିଯୁକ୍ତିଯୋଗ୍ୟ କୁଶଳତାର ବିକାଶ ଏବଂ ନିଯୁକ୍ତି କ୍ଷେତ୍ରରୁ ଲିଙ୍ଗ ଓ ଅନ୍ୟାନ୍ୟ ବିଦ୍ୱେଷ ଦୂର କରିବା ପାଇଁ ସ୍ୱତନ୍ତ୍ର ଅଭିଯାନ ଆରମ୍ଭ ହୋଇଛି । ଯୁବକ ଓ ଅନ୍ୟମାନଙ୍କର ନିଯୁକ୍ତିସାମର୍ଥ୍ୟର ବିକାଶ ଏବଂ ଅଧିକ ନିଯୁକ୍ତି ସୁଯୋଗ ସୃଷ୍ଟି ଲାଗି ଏକ ନିଯୁକ୍ତି ମିସନ କାର୍ଯ୍ୟକାରୀ ହେଉଛି । ଫଳପ୍ରସୂ ଭିତ୍ତିଭୂମିର ବିକାଶ ଏବଂ ରାଜ୍ୟର ସମୁଦାୟ ଭୌଗୋଳିକ ଅଞ୍ଚଳର ଶତକଡା ୪୫ ଭାଗ ଆଦିବାସୀ ଅଧୁଷିତ ଅଞ୍ଚଳରୁ ଅତ୍ୟଧିକ ଅନଗ୍ରସରତା ଦୂର କରିବା ପାଇଁ ରାଜ୍ୟ ସରକାର ବହୁବିଧ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ମୋଟ ୩୧୪ ବ୍ଲକ ମଧ୍ୟରୁ ୧୧୮ଟି ବ୍ଲକରେ ଆଦିବାସୀ ଉପଯୋଜନା କାର୍ଯ୍ୟକାରୀ କରାଯାଉଛି ।

ଆଦିବାସୀ ଅଞ୍ଚଳରେ ମାତ୍ରାଧିକ୍ୟ ଅନଗ୍ରସରତାର ପ୍ରତିକାର କ୍ଷେତ୍ରରେ ଏକ ବଡ଼ ସମସ୍ୟା ହେଉଛି- ଯେଉଁଠି ଛୋଟ ଛୋଟ ବସତିରେ ଅଳ୍ପ ସଂଖ୍ୟକ ଲୋକ ବିଛେଇ ହୋଇ ରହିଛନ୍ତି, ସେସବୁ ଅଞ୍ଚଳ ବଡ଼ ବଡ଼ କେନ୍ଦ୍ରୀୟ ଯୋଜନାର ଅନ୍ତର୍ଭୁକ୍ତ ହୋଇପାରୁନାହିଁ । ତେଣୁ ସେସବୁ ଅଞ୍ଚଳକୁ କେନ୍ଦ୍ରୀୟ ପାଣ୍ଠି ଆସିବା ଲାଗି କୋହଳ ଓ ସଂପ୍ରସାରଣଶୀଳ ନୀତିର ଆବଶ୍ୟକତା ରହିଛି ।

### ଅତ୍ୟଧିକ ଆଞ୍ଚଳିକ ବୈଷମ୍ୟର ପ୍ରତିକାର

ଦେଶର ଅନ୍ୟତମ ଅତ୍ୟଧିକ ଅନଗ୍ରସର କେ.ବି.କେ ଅଞ୍ଚଳରେ ଥିବା ଜିଲ୍ଲାଗୁଡିକର ତ୍ୱରାନ୍ୱିତ ବିକାଶ ପାଇଁ ସଂଶୋଧିତ ଦୀର୍ଘମିଆଦି କ୍ରିୟାନ୍ୱୟନ ଯୋଜନା (ବର୍ଷକୁ ୧୩୦ କୋଟି ଟଙ୍କା) ଏବଂ ବିଜୁ କେ.ବି.କେ ଯୋଜନା (ବର୍ଷକୁ ୧୨୦ କୋଟି ଟଙ୍କା) କାର୍ଯ୍ୟକାରୀ କରାଯାଉଛି ।

ରାଜ୍ୟର ୧୯ଟି ଜିଲ୍ଲାରେ 'ଅନୁନ୍ନତ ଅଞ୍ଚଳ ଅନୁଦାନ ପାଣ୍ଠି', ୧୧ଟି ଜିଲ୍ଲାରେ ଗୋପବନ୍ଧୁ ଗ୍ରାମୀଣ ଯୋଜନା କାର୍ଯ୍ୟକାରୀ ହେଉଛି । ଏଥିଲାଗି BRGF ଓ GGY ବର୍ଷକୁ ଯଥାକ୍ରମେ ୩୨୦ କୋଟି ଓ ୧୧୦ କୋଟି ଟଙ୍କା ଯାଏ ପାଣ୍ଠି ଯୋଗାଉଛନ୍ତି ।

ପଶ୍ଚିମ ଓଡ଼ିଶା ଉନ୍ନୟନ ପରିଷଦରେ ପଶ୍ଚିମାଞ୍ଚଳର ୧୧ଟି ଜିଲ୍ଲା ଅନ୍ତର୍ଭୁକ୍ତ । ପରିଷଦର ଲକ୍ଷ୍ୟ ହେଉଛି ଆଞ୍ଚଳିକ ଭାରସାମ୍ୟହୀନତା ଦୂର କରିବା । ପରିଷଦକୁ ରାଜ୍ୟ ଅନୁଦାନ ୨୦୦୮-୦୯ରେ ଦୁଇଗୁଣ ବୃଦ୍ଧିପାଇ ୧୦୦ କୋଟି ଟଙ୍କା ହୋଇଛି ।

ରାଜ୍ୟରେ ଆଞ୍ଚଳିକ ଅସମତୁଲତା ସମସ୍ୟାର ମୁକାବିଲା ଲାଗି ଏକ ଆଞ୍ଚଳିକ ଅସମତୁଲତା ଅନୁଧ୍ୟାନକାରୀ କମିଶନ ଗଠନ କରାଯାଇଛି । କମିଶନ ନିକଟରେ ତାଙ୍କ ରିପୋର୍ଟ ପ୍ରଦାନ କରିଛନ୍ତି ।

ଭାରତୀୟ ସଂବିଧାନର ୨୭୫ (୧) ଧାରା ଅନୁଯାୟୀ OTELP ସମେତ ଆଦିବାସୀ ଉପଯୋଜନା ଏବଂ ଅନ୍ୟାନ୍ୟ ଜୀବିକାର୍ଜନ କାର୍ଯ୍ୟକ୍ରମ ଭଳି ସ୍ୱତନ୍ତ୍ର କାର୍ଯ୍ୟକ୍ରମଗୁଡିକୁ କାର୍ଯ୍ୟକାରୀ କରାଯାଉଛି ।

* **ତପସିଲଭୁକ୍ତ ଉପଜାତି ଓ ଜାତି ଏବଂ ସଂଖ୍ୟାଲଘୁ ସଂପ୍ରଦାୟସମେତ ସମସ୍ତଙ୍କ ଲାଗି ସ୍ୱାସ୍ଥ୍ୟ ସେବା, ଶିକ୍ଷା, ନିରାପଦ ପାନୀୟ ଜଳ, ସ୍ୱାସ୍ଥ୍ୟ ବ୍ୟବସ୍ଥା ଏବଂ ସାମାଜିକ ନିରାପତ୍ତାର ସୁଲଭତା ଓ ସେମାନେ ସେସବୁ ଉପଲବ୍ଧ କରିବାର ସୁଯୋଗ କ୍ଷେତ୍ରରେ ଯଥେଷ୍ଟ ବିକାଶ ହୋଇପାରିଛି ।**
* **ସଡକ, ବନ୍ଦର, ରେଲବାଇ ଓ ବିଦ୍ୟୁତ ଯୋଗାଣ ସମେତ ଭିତ୍ତିଭୂମିର ବ୍ୟାପକତା ଓ ମାନର ବିକାଶ ଲାଗି ବଳିଷ୍ଠ ଉଦ୍ୟମ କରାଯାଇଛି ।**

### ସଂଖ୍ୟାଲଘୁ ଓ ଅନ୍ୟ ଦୁର୍ବଳ ଶ୍ରେଣୀଙ୍କ ମଧ୍ୟରେ ନିରାପତ୍ତା ରକ୍ଷା ପାଇଁ ଉଦ୍ୟମ

କେବଳ ଗୋଟିଏ ଜିଲ୍ଲା କନ୍ଧମାଳରେ ଦୁଇ ପର୍ଯ୍ୟାୟର ଘଟଣା ବ୍ୟତୀତ ଆଠବର୍ଷରୁ ଅଧିକ ସମୟ ଧରି ସମଗ୍ର ରାଜ୍ୟରେ ସାଂପ୍ରଦାୟିକ ସଦ୍‌ଭାବ ରକ୍ଷା ଦୃଷ୍ଟିରୁ ରାଜ୍ୟ ସରକାରଙ୍କ କାର୍ଯ୍ୟ-ରେକର୍ଡ ପ୍ରଶଂସନୀୟ ହୋଇ ପାରିଛି । ଆଇନ-ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହେବାମାତ୍ରେ ତୁରନ୍ତ ଦୃଢ଼ କାର୍ଯ୍ୟାନୁଷ୍ଠାନ ଯୋଗୁଁ ଏହା ସମ୍ଭବ ହୋଇପାରିଛି । ସଂଖ୍ୟାଲଘୁ ସଂପ୍ରଦାୟର ସଂସ୍ଥାଗୁଡିକ ଯେଭଳି ଶାନ୍ତ ଓ ସ୍ଥିର ବାତାବରଣ ମଧ୍ୟରେ ସେମାନଙ୍କର ଧର୍ମୀୟ, ସାଂସ୍କୃତିକ ଏବଂ ସାମାଜିକ-ଅର୍ଥନୈତିକ କାର୍ଯ୍ୟକୁ ଆଗେଇ ନେଇ ପାରିବେ, ସେଥିଲାଗି ସୁବିଧା ଦେବାକୁ ସ୍ୱତନ୍ତ୍ର ପଦକ୍ଷେପ ନିଆଯାଇଛି । ଓଡ଼ିଶା ଲୋକଙ୍କର ସହିଷ୍ଣୁତା ଓ ଶାନ୍ତିପ୍ରିୟ ପ୍ରକୃତି

**ଟେବୁଲ-୧ : ସାକ୍ଷରତା ହାର (%) ୧୯୬୧-୨୦୦୧ ଓଡ଼ିଶା ଓ ଭାରତରେ**

| ବର୍ଷ | ଓଡ଼ିଶାର ସାକ୍ଷରତା ହାର (%) | | | ଭାରତରେ ସାକ୍ଷରତା ହାର (%) | | |
|---|---|---|---|---|---|---|
| | ପୁରୁଷ | ମହିଳା | ମୋଟ | ପୁରୁଷ | ମହିଳା | ମୋଟ |
| ୧୯୬୧ | ୩୪.୭୦ | ୮.୬୦ | ୨୧.୬୬ | ୩୪.୪୦ | ୧୩.୦୦ | ୨୮.୩୦ |
| ୧୯୮୧ | ୫୬.୫୦ | ୨୧.୧୦ | ୪୧.୦୦ | ୫୬.୪୦ | ୨୯.୮୦ | ୪୩.୫୭ |
| ୨୦୦୧ | ୭୫.୩୫ | ୫୦.୫୧ | ୬୩.୦୮ | ୭୫.୩୦ | ୫୩.୭୦ | ୬୪.୮୪ |

**ଟେବୁଲ-୨ : ସାମାଜିକ ଗୋଷ୍ଠୀ ଓ ଲିଙ୍ଗଭିତ୍ତିରେ ଓଡ଼ିଶାରେ ସାକ୍ଷରତା ହାର ୧୯୭୧-୨୦୦୧**

| ବର୍ଷ | ତଫସିଲଭୁକ୍ତ ଉପଜାତି (ଏସ୍.ଟି.) | | | ତଫସିଲଭୁକ୍ତ ଜାତି (ଏସ୍.ସି.) | | | ସବୁଶ୍ରେଣୀ | | |
|---|---|---|---|---|---|---|---|---|---|
| | ପୁରୁଷ | ମହିଳା | ମୋଟ | ପୁରୁଷ | ମହିଳା | ମୋଟ | ପୁରୁଷ | ମହିଳା | ମୋଟ |
| ୧୯୭୧ | ୧୬.୩୮ | ୨.୫୮ | ୯.୪୬ | ୨୫.୯୮ | ୫.୧୭ | ୧୫.୬୧ | ୪୪.୫୦ | ୧୬.୩୦ | ୩୦.୫୦ |
| ୨୦୦୧ | ୫୧.୪୮ | ୨୩.୩୭ | ୩୭.୩୭ | ୭୦.୪୭ | ୪୦.୩୩ | ୫୫.୮୩ | ୭୫.୩୫ | ୫୦.୫୧ | ୬୩.୦୮ |

ସୁବିଦିତ । ରାଜ୍ୟରେ ଗୋଟିଏ ସଂପ୍ରଦାୟର ଲୋକ ଅନ୍ୟ ସଂପ୍ରଦାୟର ଉତ୍ସବରେ ଉତ୍ସାହର ସହିତ ଅଂଶ ଗ୍ରହଣ କରୁଥିବାର ବହୁ ଦୃଷ୍ଟାନ୍ତ ରହିଛି । ସଭ୍ୟ ସମାଜରେ ସରକାର ଏଭଳି ଉଦ୍ୟମକୁ ଉତ୍ସାହିତ କରିବା ସହିତ ଐକ୍ୟ କ୍ଷୁଣ୍ଣ କରୁଥିବା ଲୋକଙ୍କୁ ଦୃଢ଼ ହସ୍ତରେ ଦମନ କରୁଛନ୍ତି ।

**ସଂଖ୍ୟାଲଘୁ ସଂପ୍ରଦାୟ, ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ଉପଜାତିଙ୍କ ମଧ୍ୟରେ ଶିକ୍ଷାର ବିକାଶ**

ମୋଟାମୋଟି ସାକ୍ଷରତା କ୍ଷେତ୍ରରେ ଓଡ଼ିଶାର ଉଦ୍ୟମ ଆପାତତଃ ଭଲ ହୋଇପାରିଛି । ୧୯୫୧ରେ ରାଜ୍ୟରେ ସାକ୍ଷରତାହାର ଥିଲା ୧୫.୮୦% ଏବଂ ୨୦୦୧ ବେଳକୁ ସେ ହାର ୪ ଗୁଣ ବୃଦ୍ଧି ପାଇ ୬୩.୦୮%ରେ ପହଞ୍ଚିଥିଲା, ଯେତେବେଳେ କି ଜାତୀୟ ସ୍ତରରେ ଅନୁରୂପ ପରିବର୍ତ୍ତନ ୧୮.୩୩%ରୁ ୬୪.୮୦%କୁ ହୋଇଥିଲା ।

ଟେବୁଲ-୧ରେ ଓଡ଼ିଶାରେ କିଛି ବର୍ଷ ମଧ୍ୟରେ ପୁରୁଷ ଓ ମହିଳାଙ୍କ ସାକ୍ଷରତା ହାରକୁ ଭାରତର ହାର ସହିତ ତୁଳନା କରାଯାଇଛି ।

ଟେବୁଲ-୨ରେ ସାମାଜିକ ଗୋଷ୍ଠୀ ଓ ଲିଙ୍ଗଭିତ୍ତିରେ ୧୯୭୧ ଓ ୨୦୦୧ ସାକ୍ଷରତା ହାରର ତୁଳନା କରାଯାଇଛି । ଦେଖିବାର କଥା ଯେ ସାଧାରଣ ଗୋଷ୍ଠୀର ପୁରୁଷ ଓ ମହିଳା ଏବଂ ତଫସିଲଭୁକ୍ତ ଜାତିର ପୁରୁଷଙ୍କ ମଧ୍ୟରେ ସାକ୍ଷରତା ହାର ଉଲ୍ଲେଖଯୋଗ୍ୟ ହୋଇପାରିଛି । ମାତ୍ର ତଫସିଲଭୁକ୍ତ ଉପଜାତିର ପୁରୁଷ ଓ ମହିଳା ଏବଂ ତଫସିଲଭୁକ୍ତ ଜାତିର ମହିଳା ସାକ୍ଷରତାହାର ଦୃଷ୍ଟିରୁ ଅନ୍ୟମାନଙ୍କଠାରୁ ପଛରେ ରହିଛନ୍ତି ।

ମୁସଲିମ୍‌ମାନଙ୍କ ମଧ୍ୟରେ ସାକ୍ଷରତା ହାର ୭୧.୩୦%, ଯାହା ରାଜ୍ୟର ହାରାହାରି ୬୪.୦୮%ଠାରୁ ଅଧିକ, ଖ୍ରୀଷ୍ଟିଆନମାନଙ୍କ ମଧ୍ୟରେ ସାକ୍ଷରତା ୬୪.୦୮%, ତଫସିଲଭୁକ୍ତ ଜାତିଙ୍କ ମଧ୍ୟରେ ୫୫.୮୩% ମାତ୍ର ତଫସିଲଭୁକ୍ତ ଉପଜାତି ଅନ୍ୟମାନଙ୍କଠାରୁ ବହୁ ପଛରେ ପଡି ରହିଛନ୍ତି । ୨୦୦୧ରେ ସେମାନଙ୍କ ମଧ୍ୟରେ ସାକ୍ଷରତା ହାର ଥିଲା ମାତ୍ର ୩୭.୩୭% ଏବଂ ମହିଳାଙ୍କ ସାକ୍ଷରତା ହାର ୨୩.୩୭% ।

ସାକ୍ଷରତାକୁ ସାର୍ବଜନୀନ କରିବା ସହିତ ଶିକ୍ଷାର ମାନବୃଦ୍ଧି ପାଇଁ ରାଜ୍ୟ ସରକାର ଯଥେଷ୍ଟ ଉଦ୍ୟମ କରୁଛନ୍ତି । ଫଳରେ ସବୁ ଶ୍ରେଣୀର ପୁଅ ଓ ଝିଅଙ୍କର ସ୍କୁଲରେ ନାମଲେଖା ହାର ଆଶାନୁରୂପ ବୃଦ୍ଧି ପାଇଛି ଓ ଅଧାରୁ ପାଠ ଛାଡୁଥିବା ପିଲାଙ୍କ ସଂଖ୍ୟା ଯଥେଷ୍ଟ କମି ଯାଇଛି ।

**ସରକାରୀ ହସ୍ତକ୍ଷେପ**

ଓଡ଼ିଶାର ୩୦ଟି ଯାକ ଜିଲ୍ଲାରେ ସର୍ବଶିକ୍ଷା ଅଭିଯାନ କାର୍ଯ୍ୟକାରୀ ହେଉଛି । ଏହାର ଲକ୍ଷ୍ୟ ତ୍ରିବିଧ ଯଥା- ସବୁ ପିଲାଙ୍କ ସ୍କୁଲପ୍ରବେଶ, ପାଠ ଶେଷ ନ ହେବା ଯାଏ ଶିକ୍ଷାର୍ଥୀ ସ୍କୁଲ ନ ଛାଡିବା ଓ ଶିକ୍ଷାର ମାନ ବୃଦ୍ଧି ।

ଅନ୍ୟ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ମଧ୍ୟରେ ଯେଉଁ ସବୁ କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ, ସେଗୁଡ଼ିକ ହେଲା- ୧. ପ୍ରାଥମିକ ସ୍ତରରେ ବାଳିକାମାନଙ୍କ ଶିକ୍ଷା ଲାଗି ଜାତୀୟ କାର୍ଯ୍ୟକ୍ରମ (NPEGEL), ୨. ଅନଗ୍ରସର ବ୍ଲକ ପାଇଁ କସ୍ତୁରବା ଗାନ୍ଧୀ ବାଳିକା ବିଦ୍ୟାଳୟ (KGBV), ୩. କଂପ୍ୟୁଟର ସାହାଯ୍ୟରେ ଶିକ୍ଷା, ୪. ଆଦିବାସୀଙ୍କ ପାଇଁ ଶିକ୍ଷା, ୫. ସ୍ୱତନ୍ତ୍ର ଆବଶ୍ୟକତା ଥିବା ପିଲାଙ୍କ ପାଇଁ ଶିକ୍ଷା, ୬. ଶିକ୍ଷା ସଂପର୍କିତ ବିକାଶ ଓ ୭. ସ୍କୁଲ ବାହାରେ ଥିବା ପିଲାଙ୍କ ଲାଗି ସଂଯୋଜକ ପାଠ୍ୟକ୍ରମ ।

ଏଥିରେ ତଫସିଲଭୁକ୍ତ ଉପଜାତି ଓ ତଫସିଲଭୁକ୍ତ ଜାତି ବର୍ଗର ସାକ୍ଷରତା ଉପରେ ଅଧିକ ଧ୍ୟାନ ଦିଆଯାଇଛି । ପ୍ରାକ୍-ମାଟ୍ରିକ ସ୍ତରରେ ତଫସିଲଭୁକ୍ତ ଉପଜାତି ଓ ତଫସିଲଭୁକ୍ତ ଜାତି ଶିକ୍ଷାର୍ଥୀଙ୍କ ଲାଗି ୩୦୦୦ରୁ ଅଧିକ ଛାତ୍ରାବାସ ପ୍ରତିଷ୍ଠା କରାଯାଇଛି । ସେଥିରେ ପ୍ରାୟ ୩୨୦୦୦୦ ଶିକ୍ଷାର୍ଥୀ ରହି ପାରିବେ ।

ପ୍ରାକ୍ ମେଟ୍ରିକ ସ୍ତରରେ ୧ ଲକ୍ଷରୁ ଅଧିକ ତଫସିଲଭୁକ୍ତ ଉପଜାତି ଛାତ୍ରୀଙ୍କୁ ସ୍କୁଲକୁ ଆଣିବା ଲାଗି ୨୦୦୭ରେ ୧୦୦୪ଟି ତଫସିଲଭୁକ୍ତ ଉପଜାତି ଛାତ୍ରୀନିବାସ ପ୍ରତିଷ୍ଠା କରାଯାଇଛି । ପ୍ରତ୍ୟେକ ଛାତ୍ରୀ ନିବାସରେ ୧୦୦ ଜଣ ଛାତ୍ରୀ ରହି ପାରିବେ । ଏହା ଛଡା ତଫସିଲଭୁକ୍ତ ଉପଜାତି ପୁଅ ଓ ଝିଅଙ୍କ ପାଇଁ ୧୧ଟି ଏକଲବ୍ୟ ମଡ଼େଲ ଆବାସିକ ସ୍କୁଲ ରହିଛି ।

ଅଧିକନ୍ତୁ ୫୨ଟି ବାଳିକା ଆବାସିକ ହାଇସ୍କୁଲ ପ୍ରତିଷ୍ଠା କରାଯାଇଛି । ପ୍ରତ୍ୟେକ ସ୍କୁଲରେ ୨୭୫ ଜଣ ଛାତ୍ରୀ ରହି ପଢ଼ିପାରିବେ । ଏହା ଛଡା ୨୦୦୮-୦୯ରେ ତଫସିଲଭୁକ୍ତ ଉପଜାତି ଛାତ୍ରୀମାନଙ୍କ ଲାଗି ୧୯ଟି ଶିକ୍ଷା କମ୍ପ୍ଲେକ୍ସ ଖୋଲାଯାଇଛି ତା ମଧ୍ୟରୁ ୧୭ଟି ପି.ଟି.ଜି. ଲାଗି ଉଦ୍ଦିଷ୍ଟ । ଏଭଳି ସଂସ୍ଥାର ପ୍ରତ୍ୟେକଟିରେ ୨୫୦ ଜଣ ଶିକ୍ଷାର୍ଥୀ ରହିପାରିବେ ।

ତଫସିଲଭୁକ୍ତ ଉପଜାତି ଓ ତଫସିଲଭୁକ୍ତ ଜାତି ଶିକ୍ଷାର୍ଥୀଙ୍କ ନିମନ୍ତେ କେ.ବି.କେ. ଜିଲ୍ଲାଗୁଡ଼ିକରେ ୪୦୦ ଛାତ୍ରାବାସ ଖୋଲାଯାଇଛି ।

ସମଗ୍ର ରାଜ୍ୟରେ ଶିକ୍ଷକ-ଶିକ୍ଷାର୍ଥୀ ହାରାହାରି ଅନୁପାତ ୧:୪୦ ହୋଇଥିବାବେଳେ ଅଧିକାଂଶ ତଫସିଲଭୁକ୍ତ ଉପଜାତି/ ତଫସିଲଭୁକ୍ତ ଜାତି ବିଭାଗୀୟ ସ୍କୁଲରେ ସେଭଳି ଅନୁପାତ ୧:୨୦ । ଲକ୍ଷ୍ୟ ହେଉଛି ତଫସିଲଭୁକ୍ତ ଉପଜାତି ଓ ତଫସିଲଭୁକ୍ତ ଜାତି ବର୍ଗ ମଧ୍ୟରେ ଶିକ୍ଷା ପ୍ରସାର ସହିତ ଶିକ୍ଷାର ମାନ ବୃଦ୍ଧି କରିବା । ପିଲାମାନେ ସ୍କୁଲକୁ ଆସିବା ଏବଂ ଶିକ୍ଷାର୍ଥୀମାନେ ପାଠ ଶେଷ ହେବାଯାଏଁ ସ୍କୁଲରେ ରହିବା ନିମନ୍ତେ ଆଗ୍ରହ ସୃଷ୍ଟି କରିବାକୁ ପ୍ରାକ୍ ମେଟ୍ରିକ ବୃତ୍ତିକୁ ୨୦୦୮-୦୯ରେ ୫ ଗୁଣ ବୃଦ୍ଧି କରାଯାଇଛି ।

କେନ୍ଦ୍ର ସରକାର ଆରମ୍ଭ କରିଥିବା କାର୍ଯ୍ୟକ୍ରମ ଅନୁଯାୟୀ ରାଜ୍ୟ ସରକାର ମଧ୍ୟ ସଂଖ୍ୟାଲଘୁ ସଂପ୍ରଦାୟର ଉଭୟ ପ୍ରାକ୍‌ମେଟ୍ରିକ ଓ ମେଟ୍ରିକ ପରବର୍ତ୍ତୀ ଶିକ୍ଷାର୍ଥୀଙ୍କ ଲାଗି ଯୋଗ୍ୟତାଯୁକ୍ତ ସମ୍ବଳ ବୃତ୍ତି (ମେରିଟ୍ କମ୍ ମିନ୍‌ସ ସ୍କଲାରସିପ୍) କାର୍ଯକାରୀ କରୁଛନ୍ତି ।

**ସଂଖ୍ୟାଲଘୁ ସଂପ୍ରଦାୟଦ୍ୱାରା ପ୍ରତିଷ୍ଠିତ ଶିକ୍ଷାନୁଷ୍ଠାନର ବିକାଶ ଲାଗି ରାଜ୍ୟ ସରକାର ବରାବର ଉତ୍ସାହ ପ୍ରଦାନ କରୁଛନ୍ତି । ସଂଖ୍ୟାଲଘୁ ଶିକ୍ଷାନୁଷ୍ଠାନଗୁଡ଼ିକ ଲାଗି ରାଜ୍ୟ ସରକାରଙ୍କ ଗ୍ରାଣ୍ଟ ୨୦୦୬-୦୭ରେ ୧.୮୧ କୋଟିରୁ ୨୦୦୮-୦୯ରେ ୨.୧୮ କୋଟି ଟଙ୍କାକୁ ବୃଦ୍ଧି ପାଇଛି ।**

ମହିଳାମାନଙ୍କର ସାକ୍ଷରତା, ନିଯୁକ୍ତି ସାମର୍ଥ୍ୟ ଓ ସଶକ୍ତିକରଣ, ଅଭିବୃଦ୍ଧି ପ୍ରତି ଧ୍ୟାନ ଦେଇ ବୃତ୍ତିଗତ ପାଠ୍ୟକ୍ରମରେ ୩୦% ଆସନ ସେମାନଙ୍କ ଲାଗି ସଂରକ୍ଷିତ କରାଯାଇଛି ।

ଇଂଜିନିୟରିଂ, ମେଡିକାଲ, ଏମ୍.ସି.ଏ ଓ ଏମ୍.ବି.ଏ ଶିକ୍ଷାର୍ଥୀଙ୍କ ଲାଗି କୋହଳ ବୃତ୍ତି ଯୋଜନା ପ୍ରବର୍ତ୍ତନ କରାଯାଇଛି । ଯୁବସମାଜର ନିଯୁକ୍ତି ସାମର୍ଥ୍ୟ ବୃଦ୍ଧି ପ୍ରତି ଧ୍ୟାନ ଦେଇ ଏକ ଲକ୍ଷରୁ ଉର୍ଦ୍ଧ୍ୱ ଯୁବକ-ଯୁବତୀଙ୍କୁ କଂପ୍ୟୁଟର ଶିକ୍ଷା ଯୋଗାଇ ଦେବାକୁ ୨୦୦୮-୦୯ ଆର୍ଥିକ ବର୍ଷରେ ୨୦ କୋଟି ଟଙ୍କା ବରାଦ କରାଯାଇଛି ।

**ଶିକ୍ଷକ ହେବାର ଯୋଗ୍ୟତା ହାସଲ ଲାଗି ତଫସିଲଭୁକ୍ତ ଉପଜାତି ଓ ତଫସିଲଭୁକ୍ତ ଜାତି ଯୁବକ-ଯୁବତୀମାନଙ୍କୁ ଅଧିକ ସୁଯୋଗ ଦେବାକୁ କନ୍ଧମାଳ ଜିଲ୍ଲାରେ ଏକ ନୂଆ ବି.ଇଡି କଲେଜ ଖୋଲିବାକୁ ସଂପ୍ରତି ଘୋଷଣା କରାଯାଇଛି । ଏ କଲେଜଟି ତଫସିଲଭୁକ୍ତ ଉପଜାତି ଓ ତଫସିଲଭୁକ୍ତ ଜାତି ଉନ୍ନୟନ ବିଭାଗ ଦ୍ୱାରା ପରିଚାଳିତ ହେବ । ତାହାଛଡା ତଫସିଲଭୁକ୍ତ ଉପଜାତି ଓ ତଫସିଲଭୁକ୍ତ**

**ଜାତି ଯୁବକ-ଯୁବତୀଙ୍କ ବୈଷୟିକ ଶିକ୍ଷା ଓ ନିଯୁକ୍ତି ସାମର୍ଥ୍ୟର ବିକାଶ ଲାଗି କନ୍ଧମାଳ ଜିଲ୍ଲାରେ ଏକ ଉଦ୍ୟାନ ତାଲିମ ସଂସ୍ଥା ଓ ଗୋଟିଏ ଉନ୍ନତ ଆଇ.ଟି.ଆଇ ପ୍ରତିଷ୍ଠା ଲାଗି ମଧ୍ୟ ଘୋଷଣା କରାଯାଇଛି ।**

**ସାଂପ୍ରଦାୟିକ ଐକ୍ୟ**

ସାମ୍ବିଧାନିକ ବାଧ୍ୟତାପ୍ରତି ଧ୍ୟାନ ଦେଇ ସଂଖ୍ୟାଲଘୁ ଓ ଅନ୍ୟାନ୍ୟ ବଞ୍ଚିତ ଗୋଷ୍ଠୀ ମଧ୍ୟରେ ନିରାପତ୍ତା ଭାବ ସୃଷ୍ଟି କରାଇବା ଲାଗି ରାଜ୍ୟ ସରକାର ପ୍ରତିଶ୍ରୁତିବଦ୍ଧ ହୋଇଛନ୍ତି । ସରକାର କେବଳ ଯେ ସାଂପ୍ରଦାୟିକ ସାମୁଖ୍ୟରେ କେତେକ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରିଛନ୍ତି ତାହା ନୁହେଁ, ତା' ସଂଗେ ସଂଗେ ସାଂପ୍ରଦାୟିକ ଉତ୍ତେଜନା ଓ ତଫସିଲଭୁକ୍ତ ଜାତି, ତଫସିଲଭୁକ୍ତ ଉପଜାତି ଓ ମହିଳାମାନଙ୍କ ପ୍ରତି ନୃଶଂସ ଆଚରଣ ପ୍ରତି ଯଥାଶୀଘ୍ର ଦୃଷ୍ଟି ଦେବା, ମୋକଦ୍ଦମା ରଜୁ କରିବା ଏବଂ ଅପରାଧୀକୁ ନ୍ୟାୟାଳୟରେ ଦଣ୍ଡିତ କରିବା ବ୍ୟବସ୍ଥାଗୁଡ଼ିକୁ ସୁନିଶ୍ଚିତ କରିବା ଲାଗି ପଦକ୍ଷେପ ନେଇଛନ୍ତି ।

ମହିଳା ଓ ଶିଶୁମାନଙ୍କପ୍ରତି ଦୃଷ୍ଟି ଦେଇ ରାଜ୍ୟ ସରକାର ରାଜ୍ୟର ସମସ୍ତ ଥାନାରେ 'ମହିଳା ଓ ଶିଶୁ ଡେସ୍କ' କାର୍ଯ୍ୟକାରୀ କରୁଛନ୍ତି ଏବଂ ତା' ସମଗ୍ର ଦେଶରେ ଉଚ୍ଚ ପ୍ରଶଂସିତ ହୋଇପାରିଛି ।

ବେଳେବେଳେ ହିଂସା ସୃଷ୍ଟି କରୁଥିବା ବିଭିନ୍ନ ସଂପ୍ରଦାୟ ମଧ୍ୟରେ ପ୍ରକଟିତ ଉତ୍ତେଜନାକୁ ସରକାର କାର୍ଯ୍ୟକ୍ଷମ (ପ୍ରୋଆକ୍ଟିଭ) ବ୍ୟବସ୍ଥା ପ୍ରବର୍ତ୍ତନ କରି ଉଲ୍ଲେଖଯୋଗ୍ୟ ଭାବରେ ଦମନ କରିପାରିଛନ୍ତି । ୨୦୦୦ ବର୍ଷଠାରୁ ରାଜ୍ୟରେ ମାତ୍ର ଦୁଇଟି ହିଂସାତ୍ମକ ଘଟଣା ଘଟିଛି । କନ୍ଧମାଳ ଜିଲ୍ଲାରେ ଏ ଦୁଇଟି ଘଟଣା ଘଟିଥିଲା । ଏହି ଜିଲ୍ଲାର ଜନସଂଖ୍ୟାର ପ୍ରାୟ ୫୩% ତଫସିଲଭୁକ୍ତ ଉପଜାତି ଓ ପ୍ରାୟ ୨୨% ତଫସିଲଭୁକ୍ତ ଜାତିର ଲୋକ । ଜମି ଉପରେ ଅଧିକାର, ନିଯୁକ୍ତି ସୁଯୋଗ ଏବଂ ଧର୍ମ କୈନ୍ଦ୍ରିକ ବିବାଦ ଯୋଗୁଁ ସେଠାରେ ଅତୀତରେ ଦୁଇଟି ଗୋଷ୍ଠୀ ମଧ୍ୟରେ ସଂଘର୍ଷ ହୋଇଥିଲା । **ବର୍ତ୍ତମାନ କନ୍ଧମାଳ ଜିଲ୍ଲାରେ ଯାହା ଘଟୁଛି ତାହା ଅତୀତ ବିବାଦର ପରିପ୍ରକାଶ । ସେଠାକାର ଅବସ୍ଥା ଆୟତ୍ତାଧୀନ ହୋଇପାରିଛି ଏବଂ ସେଠାରେ ବାସ କରୁଥିବା ବିଭିନ୍ନ ଗୋଷ୍ଠୀର ଐକ୍ୟଭିତ୍ତିକ ତଥା ତ୍ୱରିତ ସାମାଜିକ-ଅର୍ଥନୈତିକ ବିକାଶ ପାଇଁ ସରକାର ବହୁ ପର୍ଯ୍ୟାୟକ୍ରମିକ ପଦକ୍ଷେପ ଘୋଷଣା କରିଛନ୍ତି । ସେ ଅଞ୍ଚଳର ଉନ୍ନୟନ ପ୍ରତି ଦୃଷ୍ଟି ଦେବା ଲାଗି କମିଶନର ପାହ୍ୟାର ଜଣେ ସ୍ୱତନ୍ତ୍ର ପ୍ରଶାସକଙ୍କୁ ନିଯୁକ୍ତ କରାଯାଇଛି ।** ଦୀର୍ଘଦିନ ଧରି ଲାଗି ରହିଥିବା ଜମି ଅଧିକାର ସମସ୍ୟାର ସମାଧାନ କରିବା ଲାଗି ମଧ୍ୟ ତାଙ୍କୁ କ୍ଷମତା ଦିଆଯାଇଛି ।

ଓଡ଼ିଶା ହିନ୍ଦୁ-ମୁସଲମାନ ଦଙ୍ଗାରୁ ଅପେକ୍ଷାକୃତ ଭାବେ ମୁକ୍ତ ରହି ଆସିଛି । ରାଜ୍ୟରେ ବିଭିନ୍ନ ସଂପ୍ରଦାୟର ଐକ୍ୟବଦ୍ଧ ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ସାଂପ୍ରଦାୟିକ ଏକତା ସମ୍ବନ୍ଧିତ ଏକ ରାଜ୍ୟସ୍ତରୀୟ ସମନ୍ୱୟ କମିଟି ଗଠନ କରାଯାଇଛି । ଜିଲ୍ଲାସ୍ତର ଓ ବ୍ଲକସ୍ତରରେ ମଧ୍ୟ ସମନ୍ୱୟ କମିଟି ଓ ଶାନ୍ତି କମିଟି ରହିଛି ।

ମୋ' ସରକାର ସବୁ ସଂପ୍ରଦାୟର ଏକୀକୃତ ଓ ସମନ୍ୱିତ ବିକାଶ ଲାଗି ପୁନର୍ବାର ଦୃଢ଼ ବିଶ୍ୱାସ ପ୍ରକଟ କରୁଛି । ମୋ' ସରକାରଙ୍କଦ୍ୱାରା ଅନୁସୃତ ଉନ୍ନୟନ ନୀତି ନ୍ୟାୟଭିତ୍ତିକ ଓ ସମଷ୍ଟିକୃତ ।

ମାନ୍ୟବର ମୁଖ୍ୟମନ୍ତ୍ରୀ, ଓଡ଼ିଶା
ଭୁବନେଶ୍ୱର



# ଭାରତୀୟ ସମ୍ବିଧାନରେ ସଂଘୀୟତା

ରବିନାରାୟଣ ପାଣି

୬୦ ବର୍ଷ ତଳେ ସମ୍ବିଧାନ ପ୍ରଣେତା ବହୁ ବିଚାର ବିମର୍ଷ କରି ଭାରତକୁ ଏକ ସଂଘ ବୋଲି ଲିଖିତ ସମ୍ବିଧାନରେ ଉଲ୍ଲେଖ କରିଥିଲେ । ସମ୍ବିଧାନର ଧାରା-୧ରେ ଘୋଷଣା କରାଯାଇଥିଲା ଯେ ଭାରତ ବିଭିନ୍ନ ରାଜ୍ୟର ଏକ ସମଷ୍ଟି, ସଂଯୋଗ ବା ମିଳିତାବସ୍ଥା । ଭାରତୀୟ ସମ୍ବିଧାନର ବୈଶିଷ୍ଟ୍ୟ ହେଲା- ସାମ୍ବିଧାନିକ ଶାସନ ଭାଙ୍ଗିଗଲା ବେଳେ ଜରୁରିକାଳୀନ ପରିସ୍ଥିତି ସମ୍ବିଧାନର ଧାରା-୩୫୬ ଅନୁସାରେ ଜାରି, ନିର୍ବାଚନ କମିଶନ, ଅଡିଟର ଓ କମ୍ପ୍ଟ୍ରୋଲର ଜେନେରାଲ, ଯୋଜନା କମିଶନ ଆଦି ସ୍ୱାଧୀନ ସଂସ୍ଥାର ସୃଷ୍ଟି । ସେହିଭଳି ରାଷ୍ଟ୍ରୀୟ ନିର୍ଦ୍ଦେଶାବଳୀରେ ରାଷ୍ଟ୍ର କ'ଣ କ'ଣ ଜନମଙ୍ଗଳ କାର୍ଯ୍ୟ କରିବ, ଗରିବ, ଅଶିକ୍ଷିତ, ଜନଜାତି, ପଛୁଆବର୍ଗ ଓ ସମାଜର ଦୁର୍ବଳ ଶ୍ରେଣୀ ଲୋକମାନଙ୍କ ପାଇଁ କି ନିରାପତ୍ତା ଦେବ, ତାହା ଉଲ୍ଲେଖ କରାଯାଇଅଛି । ରାଷ୍ଟ୍ରରେ ଓ ରାଜ୍ୟରେ ଲୋକ ପ୍ରତିନିଧିମୂଳକ ଶାସନ ହେବ, କାର୍ଯ୍ୟପାଳିକା ବ୍ୟବସ୍ଥାପକ ନିକଟରେ ଉତ୍ତରଦାୟୀ ରହିବ, ଏସବୁ ସମ୍ବିଧାନର ମୌଳିକ ଢାଞ୍ଚା ।


THE CONSTITUTION OF INDIA

WE, THE PEOPLE OF INDIA, having solemnly resolved to constitute India into a SOVEREIGN DEMOCRATIC REPUBLIC and to secure to all its citizens:

JUSTICE, social economic and political;

LIBERTY of thought, expression, belief, faith and worship;

EQUALITY of status and of opportunity;

and to promote among them all

FRATERNITY assuring the dignity of the individual and the unity of the Nation;

IN OUR CONSTITUENT ASSEMBLY this twenty-sixth day of November, 1949, do HEREBY ADOPT, ENACT AND GIVE TO OURSELVES THIS CONSTITUTION.

ଭାରତର ମୂଳ ସଂବିଧାନର ଫଟୋ କପି : ଏଥିରେ ବିଶ୍ୱଭାରତୀ ଶାନ୍ତିନିକେତନର ଚିତ୍ରଶିଳ୍ପୀ ନନ୍ଦଲାଲ ବୋଷ ଓ ଅନ୍ୟାନ୍ୟ ଚିତ୍ରଶିଳ୍ପୀମାନଙ୍କର ଚିତ୍ରାଙ୍କନ ନିହିତ ।

ଭାରତ ଏକ ସଂଘୀୟ ରାଷ୍ଟ୍ର - ଏହା କେତେ ଦୂର କାର୍ଯ୍ୟକାରୀ ହେଉଛି, ତାହା ବର୍ତ୍ତମାନ ଆଲୋଚନା ହେଉଛି । ସମ୍ବିଧାନର ଧାରା-୩ ଅନୁସାରେ ପାର୍ଲାମେଣ୍ଟ ଗୋଟିଏ ରାଜ୍ୟର ସୀମା କମାଇ ଦେଇପାରେ, ବଢ଼ାଇ ଦେଇପାରେ କିମ୍ବା ବିଲୋପ କରିପାରେ । ପୁଣି ଏସବୁ ସାଧାରଣ ଆଇନ ପ୍ରଣୟନଦ୍ୱାରା ସମ୍ଭବ । ସର୍ବୋଚ୍ଚ ନ୍ୟାୟାଳୟ ୧୯୬୦ ମସିହାରେ ମଧ୍ୟ ଏହାକୁ ସ୍ୱୀକୃତି ଦେଇଛନ୍ତି । ତେଣୁ ଏ ବ୍ୟବସ୍ଥା ଥିବାବେଳେ ଏହା କିଭଳି ଏହାକୁ ସଂଘ (Federation) ବୋଲି କୁହାଯିବ ? କେତେକ କହନ୍ତି ଏହା ସଂଘୀୟ ନୁହେଁ କି ଐକୀୟ ନୁହେଁ (Neither Federal nor Unitary) ଏହା ଉଭୟଚର ବା Amphbian । ଆଉ କେତେକ କହନ୍ତି ଏହା ଗଠନରେ ସଂଘୀୟ, କିନ୍ତୁ ବାସ୍ତବ କାର୍ଯ୍ୟକାରିତାରେ ଐକୀୟ ।

ଦ୍ୱିତୀୟତଃ ଯଦିଓ ବ୍ୟବସ୍ଥାପିକା ଓ ନ୍ୟାୟପାଳିକା କ୍ଷମତା ରାଜ୍ୟ ଓ କେନ୍ଦ୍ର ମଧ୍ୟରେ ବଣ୍ଟନ ହୋଇଛି, ତଥାପି ରାଜ୍ୟ ସରକାରମାନଙ୍କ ରାଜନୈତିକ ସାର୍ବଭୌମତ୍ୱ (Political Sovereignty) ରହୁନାହିଁ । **ଆମେରିକୀୟ ସଂଘୀୟ ବ୍ୟବସ୍ଥାରେ ରାଜ୍ୟମାନଙ୍କ ଯେଭଳି ସ୍ୱତନ୍ତ୍ରତା ରହିଛି, ଭାରତରେ ସେଭଳି ନାହିଁ । ରାଜ୍ୟ ସରକାରଙ୍କ କ୍ଷମତା କାଟଛାଣ୍ଟ ସଂକୋଚିତ କରାଯାଉଛି ।** ୧୯୬୩ ମସିହାରେ ପଶ୍ଚିମବଙ୍ଗ ବନାମ କେନ୍ଦ୍ର ସରକାର ମାମଲାରେ ସର୍ବୋଚ୍ଚ ନ୍ୟାୟାଳୟ ଏହାକୁ ସ୍ୱୀକୃତ ଦେଇଥିଲେ । କେନ୍ଦ୍ର ସରକାରଙ୍କ ସାମ୍ବିଧାନିକ କ୍ଷମତା ଅଛି ଯେ, ରାଜ୍ୟ ସରକାରଙ୍କ ସଂପତ୍ତି ଅଧିଗ୍ରହଣ ସେ କରିପାରିବେ । ଅଧିଗ୍ରହଣ ସରକାରୀ ଉଦ୍ଦେଶ୍ୟରେ ହୋଇପାରିବ ।

ତୃତୀୟତଃ ସମ୍ବିଧାନର ଧାରା-୩୫୬ ପ୍ରୟୋଗରେ କେନ୍ଦ୍ର ସରକାର ରାଜ୍ୟ ପ୍ରଶାସନରେ ହସ୍ତକ୍ଷେପ କରିପାରିବେ । ଏହି ଅଧାଦେଶ ରାଜ୍ୟପାଳଙ୍କ ରିପୋର୍ଟ ଭିତ୍ତିରେ ହୋଇଥାଏ । ରାଜ୍ୟପାଳ ଏକପକ୍ଷରେ ରାଷ୍ଟ୍ରପତିଙ୍କଦ୍ୱାରା ନିଯୁକ୍ତ କେନ୍ଦ୍ର ସରକାରଙ୍କ ପ୍ରତିନିଧି, ଅପରପକ୍ଷେ ରାଜ୍ୟର ସାମ୍ବିଧାନିକ ମୁଖ୍ୟ । କେତେକ କ୍ଷେତ୍ରରେ ରାଜ୍ୟପାଳ କେନ୍ଦ୍ର ସରକାରଙ୍କ ପ୍ରତିନିଧି ଦାୟିତ୍ୱ ପାଳନ କରିବା ସହିତ ଦଳୀୟ ଆନୁଗତ୍ୟ ଦେଖାଇ ଭ୍ରମାତ୍ମକ

ତଥ୍ୟ ଦେଇ ରାଜ୍ୟର ସାମ୍ବିଧାନିକ ଶାସନ ଭୁଷୁଡ଼ି ପଡ଼ିଛି ବୋଲି ସୁପାରିଶ କରି ସମ୍ବିଧାନର ଧାରା-୩୫୬ ପ୍ରୟୋଗ ପାଇଁ ମତ ଦେଇଥାନ୍ତି ବା ସୁପାରିଶ କରିଥାନ୍ତି । କେନ୍ଦ୍ର ସରକାର ଏହାକୁ ମାନି ନିଅନ୍ତି । ଫଳରେ ଏହା କେନ୍ଦ୍ର ସରକାରଙ୍କ ହସ୍ତକ୍ଷେପ ଭଳି ହୋଇଯାଇଥାଏ । ସେ ଯାହାହେଉ, ବୋମାଇ ମାମଲା ଓ ବିହାରରେ ରାଷ୍ଟ୍ରପତି ଶାସନ ଜାରି ମାମଲାରେ ସର୍ବୋଚ୍ଚ ନ୍ୟାୟାଳୟ ଗୁରୁତ୍ୱପୂର୍ଣ୍ଣ ଓ ଐତିହାସିକ ରୁଲିଂ ଦେବାପରେ, କେନ୍ଦ୍ର ସରକାରଙ୍କର ଏ ପ୍ରକାର ହସ୍ତକ୍ଷେପର ପରିସମାପ୍ତି ହେବ ବୋଲି ଆଶା କରାଯାଇଥିଲା ।

ଚତୁର୍ଥରେ ରାଜ୍ୟମାନଙ୍କର ଏବେ ଅର୍ଥନୈତିକ ନିର୍ଭରଶୀଳତା କେନ୍ଦ୍ର ସରକାରଙ୍କ ନିକଟରେ ବଢ଼ିଯାଇଛି । ରାଜ୍ୟ ଟିକସ ଅପେକ୍ଷା କେନ୍ଦ୍ରୀୟ ଟିକସର ପରିମାଣ ବେଶୀ । ରାଜ୍ୟ ଟିକସରୁ ଅଧିକ ଭାଗ, କୋଇଲା ରୟାଲଟି ବୃଦ୍ଧି, କେନ୍ଦ୍ରୀୟ ଅନୁଦାନ, ପ୍ରାକୃତିକ ବିପର୍ଯ୍ୟୟ ପାଣ୍ଠି, ଅର୍ଥ କମିଶନଙ୍କ ଅନୁଦାନ ନ ପାଇଲେ ରାଜ୍ୟସରକାର ଚଳି ପାରିବେ ନାହିଁ । କେନ୍ଦ୍ରୀୟ ପ୍ରକଳ୍ପର ମଞ୍ଜୁରୀ, ରେଳବାଇ, ବିମାନସେବା ପର୍ଯ୍ୟଟନର ଓ ଜାତୀୟ ରାଜପଥର ବିକାଶ - ଏସବୁ ପାଇଁ ରାଜ୍ୟ ସରକାର କେନ୍ଦ୍ର ସରକାର ନିକଟରେ ହାତ ପାତିଥାନ୍ତି ।

ପଞ୍ଚମରେ ବ୍ୟବସ୍ଥାପକ କ୍ଷମତା କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ମଧ୍ୟରେ ବଣ୍ଟନ ହୋଇସାରିଲା ପରେ ଅବଶିଷ୍ଟ କ୍ଷମତାକୁ (Residual powers)କୁ ମିଳିତ ତାଲିକା (Concurrent list)ରେ ରଖାଯାଇଛି । ଏ ତାଲିକା ବିଷୟରେ କେନ୍ଦ୍ର ସରକାରଙ୍କ ଚୂଡ଼ାନ୍ତ ଅଧିକାର ଅଛି ।

ଷଷ୍ଠରେ ରାଜ୍ୟପାଳ ରାଷ୍ଟ୍ରପତିଙ୍କଦ୍ୱାରା ନିଯୁକ୍ତ ହୋଇଥାନ୍ତି ଓ ସେ କେନ୍ଦ୍ର ସରକାରଙ୍କ ପ୍ରତିନିଧି ଭାବେ କାର୍ଯ୍ୟ କରିଥାନ୍ତି । ପ୍ରତିମାସରେ ସେ କେନ୍ଦ୍ର ସରକାରଙ୍କ ନିକଟକୁ ରାଜ୍ୟ ସରକାରଙ୍କ ସଂପର୍କରେ ଏକ ରିପୋର୍ଟ ପ୍ରଦାନ କରିଥାନ୍ତି ।

ସାଧାରଣତଃ ସଂଘୀୟ ବ୍ୟବସ୍ଥାରେ ଏକ ଲିଖିତ ସମ୍ବିଧାନର ଆବଶ୍ୟକତା ରହିଛି । ସମ୍ବିଧାନ ସବୁଠାରୁ ଊର୍ଦ୍ଧ୍ୱରେ । ସମ୍ବିଧାନ ମଧ୍ୟ କଠିନ । ଏହାର ସଂଶୋଧନ କ୍ଷମତା ଯଦିଓ ପାର୍ଲିଆମେଣ୍ଟ ଉପରେ ନ୍ୟସ୍ତ, ତଥାପି ଏହା ସହଜସାଧ୍ୟ ନୁହେଁ । ସର୍ବଶେଷରେ ସର୍ବୋଚ୍ଚ ନ୍ୟାୟାଳୟର ରାୟ ଅନୁଯାୟୀ ସମ୍ବିଧାନ ସଂଶୋଧନ ବା ନବମ ପରିଚ୍ଛେଦର ଅନ୍ତର୍ଭୁକ୍ତ ଆଇନ ଯଦି ସମ୍ବିଧାନର ମୌଳିକ ଢାଞ୍ଚାକୁ କ୍ଷୁଣ୍ଣ କରେ, ତେବେ ତାହା ନ୍ୟାୟିକ ସମୀକ୍ଷାଭୁକ୍ତ ହେବ । କେନ୍ଦ୍ର-ରାଜ୍ୟ ସଂପର୍କର ସମସ୍ତ ବିଷୟ ଉଭୟଙ୍କ ସହମତିରେ ସଂଶୋଧିତ ହେବା ଆବଶ୍ୟକ ।

ରାଜ୍ୟ ସରକାରଙ୍କ କେତେକ ଆଇନ ଯଥା- ସଂପତ୍ତି ଅଧିଗ୍ରହଣ, ବିକ୍ରୀକର, ଅତ୍ୟାବଶ୍ୟକୀୟ ଦ୍ରବ୍ୟ ଆଇନ ରାଷ୍ଟ୍ରପତିଙ୍କ ଅନୁମୋଦନ ସାପେକ୍ଷ । ଅଧିକନ୍ତୁ ରାଜ୍ୟପାଳ କେତେକ ଆଇନ ରାଷ୍ଟ୍ରପତିଙ୍କ ଅନୁମୋଦନ ପାଇଁ ସୁରକ୍ଷିତ ରଖିପାରନ୍ତି । ତେଣୁ ବାସ୍ତବରେ, ଭାରତୀୟ ସମ୍ବିଧାନ ଐକୀୟ (unitary) ମନେ ହେଲେ ବି କେତେକ କ୍ଷେତ୍ରରେ ସଂଘୀୟ (Federal) ବ୍ୟବସ୍ଥା ଅଛି ।

୧୯୯୦ ପୂର୍ବରୁ ଯେତେବେଳେ ଜାତୀୟ ରାଜନୈତିକ ଦଳମାନେ ଏକକ ସଂଖ୍ୟା ଗରିଷ୍ଠତା ହାସଲ କରି କେନ୍ଦ୍ରରେ ସରକାର ଗଠନ କରୁଥିଲେ, କେନ୍ଦ୍ରର ପ୍ରଭୁତ୍ୱ ଅତିମାତ୍ରାରେ ଥିଲା । ରାଜ୍ୟ ସରକାରମାନେ ସେତେବେଳେ ମ୍ୟୁନିସିପାଲିଟି ଭଳି ଥିଲେ । କିନ୍ତୁ ଆଞ୍ଚଳିକ ଦଳର ଅଭ୍ୟୁଦୟ ପରେ ଓ କେନ୍ଦ୍ରରେ ମିଳିତ ସରକାର ଯୁଗ ଆସିଲା ପରେ କେନ୍ଦ୍ର ସରକାର ଆଉ ପୂର୍ବଭଳି ପ୍ରଭୁତ୍ୱ ଜାରି କରିପାରୁ ନାହାନ୍ତି । ତଥାପି ସମ୍ବିଧାନର ବିଭିନ୍ନ ଧାରାଗୁଡ଼ିକ କେନ୍ଦ୍ରର ପକ୍ଷପାତୀ ।

ସଂପ୍ରତି ଡି.ଏମ୍.କେ. ଦଳ କହିଛନ୍ତି ଯେ କେନ୍ଦ୍ର ଓ ରାଜ୍ୟ ସଂପର୍କ ଆଦର୍ଶଜନକ ହେବା ଉଚିତ ଓ ରାଜ୍ୟମାନଙ୍କୁ ଅଧିକ କ୍ଷମତା ଦିଆଯିବା କଥା । ରାଜ୍ୟମାନଙ୍କୁ ସ୍ୱାତନ୍ତ୍ୟ ଦିଆଯିବା କଥା ଓ କେନ୍ଦ୍ରରେ କେବଳ ସଂଘୀୟ ବ୍ୟବସ୍ଥା ରହିବା କଥା । ଶ୍ରୀ ଏମ୍. କରୁଣାନିଧିଙ୍କ ମତରେ ଯଦିଓ ଭାରତୀୟ ସମ୍ବିଧାନ ସଂଘୀୟ ତଥାପି ତରାଜୁ କେନ୍ଦ୍ର ପକ୍ଷରେ ଢଳିଥାଏ । ରାଜ୍ୟମାନେ ପ୍ରଶାସନିକ ଓ ଆର୍ଥିକ ଦିଗରେ ସ୍ୱାଧୀନ ଭାବେ କାର୍ଯ୍ୟ କରିପାରିନଥାନ୍ତି । ତେଣୁ ଏକ ଦୃଢ଼ କେନ୍ଦ୍ର ସରକାର ପାଇଁ ଯେଉଁସବୁ କ୍ଷମତା ଦରକାର ତାହା କେନ୍ଦ୍ରକୁ ଦିଆଯିବା କଥା ଓ ଅବଶିଷ୍ଟ କ୍ଷମତା ରାଜ୍ୟ ସରକାରମାନଙ୍କୁ ଦିଆଯିବା କଥା । ଏହା ପୂର୍ବରୁ ନବେ ଦଶକରେ ମଧ୍ୟ ମୁଖ୍ୟମନ୍ତ୍ରୀ ସ୍ୱର୍ଗୀୟ ବିଜୁ ପଟ୍ଟନାୟକ ଆର୍ଥିକ ଦୃଷ୍ଟିରୁ ରାଜ୍ୟମାନଙ୍କୁ ଅଧିକ ସ୍ୱାଧୀନତା ଦେବା ଲାଗି ଦାବି କରି କେନ୍ଦ୍ର ସରକାରଙ୍କ ଉପରେ ଚାପ ସୃଷ୍ଟି କରିଥିଲେ ।

ବହୁ ଧର୍ମାବଲମ୍ବୀ ଓ ବହୁ ଭାଷାଭାଷୀ ରାଜ୍ୟରେ ଐକୀୟ ଶାସନ ପଦ୍ଧତିକୁ ଲଦି ଦିଆଯିବା ଅନୁଚିତ । କେନ୍ଦ୍ର-ରାଜ୍ୟ ସଂପର୍କରେ ସାରକାରିଆ କମିଶନଙ୍କ ସୁପାରିଶକୁ କାର୍ଯ୍ୟକାରୀ କରାଯାଇ ନାହିଁ, ଏଭଳିକି ସଂପୂର୍ଣ୍ଣ ଭାବେ ଗ୍ରହଣ କରାଯାଇନାହିଁ । ବାସ୍ତବରେ ଏଠି ସଂଘୀୟ ବ୍ୟବସ୍ଥା ପୂରାପୂରି ଭାବେ କାର୍ଯ୍ୟ କରୁ ନାହିଁ । ଫଳରେ କେନ୍ଦ୍ର ଓ ରାଜ୍ୟ ମଧ୍ୟରେ ପାରସ୍ପରିକ ସଂପର୍କ ସୃଷ୍ଟି ହୋଇପାରିବ ଓ ଉଭୟେ ମିଳିତ ଭାବେ ଦେଶର ଐକ୍ୟ ଓ ସଂହତି ପ୍ରତିଷ୍ଠା ଦିଗରେ କାର୍ଯ୍ୟ କରିବେ ।

ଏଚ୍.ଆଇ.ଜି-୨୬
କଳିଙ୍ଗ ବିହାର, ଭୁବନେଶ୍ୱର

# ପ୍ରଥମ ସ୍ୱାଧୀନତା ସଂଗ୍ରାମକୁ ଘେଁସ ଜମିଦାର ପରିବାରର ଅବଦାନ

ପବିତ୍ର ମୋହନ ବାରିକ

୧୮୫୭ ଖ୍ରୀଷ୍ଟାବ୍ଦର ଐତିହାସିକ ଗଣ ସଂଗ୍ରାମ ସାମ୍ରାଜ୍ୟବାଦୀ ଶକ୍ତି ଇଂରେଜମାନଙ୍କ ପ୍ରତି ଥିଲା ଶକ୍ତ ଆଘାତ । ଏହି ଘଟଣାର ସ୍ୱରୂପ ଓ ପ୍ରକୃତିକୁ ନେଇ ଗବେଷକ, ଐତିହାସିକ ଓ ବିଦ୍ୱାନମାନଙ୍କ ମଧ୍ୟରେ ମତଭେଦ ପ୍ରକାଶ ପାଇ ଆସିଥିଲା । ଏହି ଐତିହାସିକ ଘଟଣାର ୧୫୦ ବର୍ଷ ପୂର୍ତ୍ତି ଉପଲକ୍ଷେ ଏହାକୁ ଭାରତୀୟ ପ୍ରଥମ ସ୍ୱାଧୀନତା ସଂଗ୍ରାମର ମାନ୍ୟତା ଓ ସ୍ୱୀକୃତି ପ୍ରଦାନ କରାଯାଇ ମହାସମାରୋହରେ ପାଳନ କରାଯାଇଅଛି । ଏହି ମହାନ୍ ଭାରତୀୟ ପ୍ରଥମ ସଂଗ୍ରାମରେ ଅବିଭକ୍ତ ସମ୍ବଲପୁର ଜିଲ୍ଲାର ଭୂମିକା ସର୍ବଦା ସ୍ମରଣୀୟ ।

ବୀରଶ୍ରେଷ୍ଠ ତଥା ଆଜନ୍ମ ବିପ୍ଳବୀ, ମହାନ ଦେଶ ଭକ୍ତ, ଜାତିପ୍ରେମୀ ସୁରେନ୍ଦ୍ର ସାଏଙ୍କୁ ଇଂରେଜମାନଙ୍କ ବିରୁଦ୍ଧରେ ଜୀବନବ୍ୟାପି ସଂଗ୍ରାମ ଚଳାଇବାକୁ ଏ ଅଞ୍ଚଳର ଅନେକ ଜମିଦାର, ଗୌନ୍ତିଆ ଓ ଗ୍ରାମ୍ୟ- ମୁଖ୍ୟମାନେ ନିରନ୍ତର, ନିଃସ୍ୱାର୍ଥପରଭାବେ ସମର୍ଥନ ଦେଇ ଆସୁଥିଲେ । ବରଗଡ଼ ଜିଲ୍ଲା ଅନ୍ତର୍ଗତ ଘେଁସର ଜମିଦାର ସଂଗ୍ରାମୀ ବୀର ଶହୀଦ ମାଧୋ ସିଂ ଥିଲେ ଏହି ରକ୍ତାକ୍ତ ବିପ୍ଳବର କର୍ଣ୍ଣଧାର ଓ ସଂଗ୍ରାମୀ ସୁରେନ୍ଦ୍ର ସାଏଙ୍କ ବିଶ୍ୱସ୍ତ ସହଯୋଗୀ । ଘେଁସ ଜମିଦାର ମାଧୋ ସିଂଙ୍କ ପରିବାରର ସମସ୍ତ ସଦସ୍ୟ ଏହି ଜାତୀୟ ଆନ୍ଦୋଳନରେ ଝାସ ଦେଇଥିଲେ । ବୀର ରକ୍ତରେ ଗଢ଼ା ଏହି ପରିବାରର ସଦସ୍ୟମାନଙ୍କର ସାହସ, ନିର୍ଭୀକତା ଓ ସ୍ୱାଭିମାନର ସ୍ୱାକ୍ଷର ଏକ ବିରଳ ଦୃଷ୍ଟାନ୍ତ । ମାଧୋ ସିଂ ଥିଲେ ବିଂଝାଲ ସଂପ୍ରଦାୟର ଜମିଦାର । ତାଙ୍କ ଅଧୀନରେ ଥିଲା ୨୫ ଖଣ୍ଡ ଗ୍ରାମ । ଜଣେ ପ୍ରଜାବତ୍ସଳ, ପରୋପକାରୀ ଓ ଉଦାରବାଦୀ ଜମିଦାର ଭାବରେ ତାଙ୍କର ଅନେକ ସୁଖ୍ୟାତି ଥିଲା ।

ଇଂରେଜମାନଙ୍କର ଅନ୍ୟାୟ ଉପରେ ପର୍ଯ୍ୟବସିତ ନୀତିକୁ ସେ କୌଣସି ମତେ ସମର୍ଥନ କରିପାରିନଥିଲେ । ସମ୍ବଲପୁରର ତତ୍କାଳୀନ ଇଂରେଜ ଡେପୁଟି କମିଶନର ଡି.ଏଫ୍. କକବର୍ଣ୍ଣ ୩୫୬ ଟଙ୍କାର ରାଜସ୍ୱ ପ୍ରଦାନ କରିବା ନିମନ୍ତେ ଜମିଦାର ମାଧୋ ସିଂଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଜନପ୍ରିୟ ଜମିଦାର ମାଧୋ ସିଂ ଇଂରେଜ କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶକୁ ଅମାନ୍ୟ କରି ନିଜ ବିବେକ ଅନୁମୋଦିତ କାର୍ଯ୍ୟ କରିବାକୁ ପସନ୍ଦ କରିଥିଲେ । ସେ ଇଂରେଜମାନଙ୍କୁ ଖୁସି କରିବାକୁ ଯାଇ ପ୍ରାଣାଧିକ ପ୍ରଜାମାନଙ୍କ ଉପରେ ଅତ୍ୟଧିକ କର ଧାର୍ଯ୍ୟ କରିବାକୁ କେବେ ଉଚିତ୍ ମନେ କରୁନଥିଲେ । ତେଣୁ ଇଂରେଜମାନଙ୍କ ସହିତ ତାଙ୍କର ତୀବ୍ର ମନୋମାଳିନ୍ୟ ଆରମ୍ଭ ହେଲା । ଦ୍ୱିତୀୟତଃ ତାଙ୍କ ଜାମାତା ସୋନାଖାନାର ଜମିଦାର ନାରାୟଣ ସିଂଙ୍କୁ ଇଂରେଜମାନେ ନିର୍ମମ ଭାବରେ ହତ୍ୟା କରିଥିଲେ । ଅବିବେକୀ ଇଂରେଜ ସରକାରଙ୍କର ଏଭଳି ଜଘନ୍ୟ ଅପରାଧକୁ ସହ୍ୟ କରିବା ସ୍ୱାଧୀନଚେତା ମାଧୋ ସିଂଙ୍କ ପକ୍ଷରେ କେବେବି ସମ୍ଭବପର ନଥିଲା । ଏହାର ସମୁଚିତ ପ୍ରତିଶୋଧ ନେବା ପାଇଁ ଇଂରେଜମାନଙ୍କ ବିରୁଦ୍ଧରେ ଅସ୍ତ୍ରଧାରଣ କରିବାକୁ ସେ କେବେ ପଛଘୁଞ୍ଚା ଦେଇନଥିଲେ । ତୃତୀୟତଃ ବିପ୍ଳବର ଅଗ୍ନିଶିଖା ସମ୍ବଲପୁରରେ ଇଂରେଜ ବିରୋଧୀ ଆନ୍ଦୋଳନର ମହାନାୟକ ତଥା ଚୌହାଣ ବୀର ସୁରେନ୍ଦ୍ର ସାଏଙ୍କ ନ୍ୟାଯ୍ୟ ଦାବିପ୍ରତି ତାଚ୍ଛଲ୍ୟ ଭାବ ମାଧୋ ସିଂଙ୍କୁ ମର୍ମାହତ ଓ କ୍ଷୁବ୍ଧ କରିଥିଲା । ଏହାର ପ୍ରତିବାଦରେ ସେ ସୁରେନ୍ଦ୍ର ସାଏଙ୍କୁ ପୂର୍ଣ୍ଣ ସମର୍ଥନ ପ୍ରଦାନ କରି ଆସିଥିଲେ । ସୁରେନ୍ଦ୍ର ସାଏ ବନ୍ଦୀ ଅବସ୍ଥାରେ ଜେଲରେ କାଳାତିପାତ କରୁଥିଲେ । ବିଦ୍ରୋହୀମାନେ ସମ୍ବଲପୁରରେ ଇଂରେଜମାନଙ୍କୁ ପ୍ରବଳ ପ୍ରତିରୋଧ କରିବା ଓ ପ୍ରଚଣ୍ଡ ଆଘାତ ଦେବାରେ ସମର୍ଥ ହୋଇଥିଲେ । ସମ୍ବଲପୁରସ୍ଥ ଇଂରେଜ କ୍ୟାପଟେନ ଆର୍.ଟି. ଲେଗ୍ ଓ କମିଶନର କକବର୍ଣ୍ଣ ସାହେବ ବିଦ୍ରୋହରେ ସୁରେନ୍ଦ୍ର ସାଏ ଓ ତାଙ୍କର ସହକର୍ମୀମାନଙ୍କୁ କୌଣସି ସାହାଯ୍ୟ ନ କରିବା ନିମନ୍ତେ ମାଧୋ ସିଂଙ୍କୁ ସତର୍କ କରାଇ ଦେଇଥିଲେ । ଯଦି ସେ ଏହା ଉଲଙ୍ଘନ କରନ୍ତି ଏହାର ଫଳାଫଳ ଅତ୍ୟନ୍ତ ଭୟଙ୍କର ହେବ ବୋଲି ଚେତାବନୀ ଦେଇଥିଲେ । କିନ୍ତୁ ମାଧୋ ସିଂ ଥିଲେ ନିର୍ବିକାର, ନିର୍ଲିପ୍ତ ଓ ଇଂରେଜ ସରକାରଙ୍କର ଏ ଧମକପୂର୍ଣ୍ଣ ମନ୍ତବ୍ୟ କେବେ ତାଙ୍କୁ ଭୟଭୀତ କରିପାରିନଥିଲା । ଏଥିରେ ତିଳେମାତ୍ର ବିଚଳିତ ନହୋଇ ମାଧୋ ସିଂ ନିଜ ସମର୍ଥକ ସତୀର୍ଥ ସଂଗ୍ରାମୀମାନଙ୍କ ସହିତ ମିଶି ସୁରେନ୍ଦ୍ର ସାଏଙ୍କୁ ସହଯୋଗ

କରିବା ନିମନ୍ତେ ଆଗେଇ ଆସିଥିଲେ । ବୃଦ୍ଧ ବୟସରେ ମାଧୋ ସିଂଙ୍କ ଅମାପଶକ୍ତି, ଅସୀମ ସାହସ ଓ ଦୃଢ଼ ମନୋବଳ ଥିଲା ଅତୀବ ଆଚାର୍ଯ୍ୟଜନକ । ମାଧୋ ସିଂ ନିଜ ଦେଶଭକ୍ତ ପୁତ୍ର ହଟେ ସିଂ, କୁଞ୍ଜଲ ସିଂ, ବୈର ସିଂ ଓ ଐର ସିଂଙ୍କୁ ସଶସ୍ତ୍ର ସଂଗ୍ରାମରେ ସୁରେନ୍ଦ୍ର ସାଏଙ୍କୁ ସହଯୋଗ ପ୍ରଦାନ ନିମନ୍ତେ ସମ୍ବଲପୁର ପ୍ରେରଣ କରିଥିଲେ । ଏକ ବିରାଟ ଶୋଭାଯାତ୍ରାରେ ଯାଇ ସେମାନେ ସମ୍ବଲପୁରର ବ୍ରହ୍ମପୁରା ମନ୍ଦିରରେ ପହଞ୍ଚି ଇଂରେଜମାନଙ୍କର ଅତ୍ୟାଚାରର ଅବସାନ ନିମନ୍ତେ ଆମରଣ ସଂଗ୍ରାମ ପାଇଁ ବଜ୍ର ଶପଥ ଗ୍ରହଣ କରିଥିଲେ । ଏହି ଶୋଭାଯାତ୍ରାରେ ଏକ ପାଗଳ ହାତୀକୁ କୁଞ୍ଜଲ ସିଂ ଆୟତ୍ତ କରିଥିବାରୁ ସୁରେନ୍ଦ୍ର ସାଏ ତାଙ୍କୁ ଏକ ପଡ଼ା ଦାନ କରିଥିଲେ । ଏହା ବର୍ତ୍ତମାନ କୁଞ୍ଜଲପଡ଼ା ନାମରେ ପରିଚିତ । ବିଦ୍ରୋହୀମାନଙ୍କର ରଣହୁଙ୍କାର ଓ ଅତର୍କିତ ପ୍ରାଣମୂର୍ଚ୍ଛା ଆକ୍ରମଣରେ ଅତିଷ୍ଠ ହୋଇ ପ୍ରବଞ୍ଚନା ବିଦ୍ୟାରେ ଧୂରନ୍ଧର ଇଂରେଜମାନେ ଶଠତାର ଆଶ୍ରୟ ଦେବାକୁ କେବେ ପଛାଇ ନଥିଲେ । ସୁରେନ୍ଦ୍ର ସାଏଙ୍କୁ ତାଙ୍କ ନ୍ୟାଯ୍ୟ ଅଧିକାର ପ୍ରଦାନ କରିବେ ବୋଲି ଇଂରେଜମାନେ ମିଥ୍ୟା ପ୍ରତିଶ୍ରୁତି ପ୍ରଦାନ କଲେ । କିନ୍ତୁ ଇଂରେଜମାନେ ନିଜର ସ୍ଥିତି ସୁଦୃଢ଼ କରିବା ସୁରେନ୍ଦ୍ର ସାଏଙ୍କ ବିଦ୍ରୋହକୁ ସମୂଳେ ବିନାଶ କରିବା ନିମନ୍ତେ କଟକରୁ ଅଧିକ ସୈନ୍ୟ ଆଣିଥିଲେ । ଇଂରେଜମାନଙ୍କ ସହିତ ହୀନ ଚକ୍ରାନ୍ତର ସୂଚନା ପାଇ ସୁରେନ୍ଦ୍ର ସାଏ ଓ ତାଙ୍କର ବିଶ୍ୱସ୍ତ ଅନୁଗାମୀମାନେ ଖିଣ୍ଡା ଗ୍ରାମ ଅଭିମୁଖେ ଯାତ୍ରା କଲେ । ପୁନର୍ବାର ଅପୂର୍ବ ଉତ୍ସାହ ଓ ଉଦ୍ଦୀପନା ସହିତ ବିଦ୍ରୋହୀମାନେ ଇଂରେଜମାନଙ୍କର ମୁକାବିଲା କରିବା ପାଇଁ ସମସ୍ତ ଶକ୍ତି ବିନିଯୋଗ କରିଥିଲେ । ମାଧୋ ସିଂ ଓ ତାଙ୍କର ପୁତ୍ରମାନେ ସିଂଘୋଡ଼ା ଘାଟିର ଦାୟିତ୍ୱରେ ଥିଲେ । ସାମରିକ ଦୃଷ୍ଟିକୋଣରୁ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଘାଟି । ଏହି ଘାଟି ମଧ୍ୟଦେଇ ନାଗପୁର ଓ ରାୟପୁରରୁ ସୈନ୍ୟ ଓ ଗୋଳାବାରୁଦ ସମ୍ବଲପୁରକୁ ଇଂରେଜମାନେ ପଠାଇଥାନ୍ତି । ମାଧୋ ସିଂ ଓ ତାଙ୍କର ପୁତ୍ରମାନେ ଇଂରେଜମାନଙ୍କ ଆତଙ୍କ ସୃଷ୍ଟି କରିବାରେ ସମର୍ଥ ହୋଇଥିଲେ । ଏଥିରେ ଉତ୍କ୍ଷିପ୍ତ ଓ କ୍ରୋଧାନ୍ୱିତ ହୋଇ କ୍ୟେପ୍‌ଟେନ ମେଜର ଫରଷ୍ଟର ଘେଁସ ଗ୍ରାମରେ ଅଗ୍ନି ସଂଯୋଗ କରି ଗ୍ରାମଟିକୁ ସଂପୂର୍ଣ୍ଣ ଭସ୍ମୀଭୂତ କଲେ । ଘେଁସର ଦେଶପ୍ରାଣ ଅଧିବାସୀମାନେ ପ୍ରାୟ ସାତ ବର୍ଷ ପର୍ଯ୍ୟନ୍ତ ନିଘଞ୍ଚ ଅରଣ୍ୟରେ ହିଂସ୍ର ଜୀବଜନ୍ତୁଙ୍କ ସହିତ କାଳାତିପାତ କରିଥିଲେ । ସମ୍ବଲପୁରୀ ଲୋକଗୀତରେ ଏହି ବିଭତ୍ସ ଘଟଣାର କରୁଣ ଦୃଶ୍ୟ ସ୍ଥାନିତ ହୋଇଅଛି ।

'ରିଣେ ମିଶେ ଆଇଲା ସାହେବ
ଘେଁସ ଦେଲା ପୁଡ଼ାଇ,
କିଏ ରହେଲା ଗାଁ ଗହଳି
କିଏ ରହେଲା ଝାରେ,
ଆଠେଁ ରକତ ବୁହିଗଲା
ଜାଇଫୁଲ - କରାପାଏନ ।'

ମାଧୋ ସିଂ ଇଂରେଜମାନଙ୍କୁ ବେନ୍ଦରା (ମାଙ୍କଡ଼) ବୋଲି ସମ୍ବୋଧନ କରି ସେମାନଙ୍କର କୁକାର୍ଯ୍ୟ ପାଇଁ ପ୍ରବଳ ଘୃଣା କରିଆସୁଥିଲେ । ତେଣୁ ଲୋକଗୀତରେ ଉଲ୍ଲେଖ ଅଛି -

'ହାତୀ ସିଂ, କୁଞ୍ଜଲ ସିଂ, କାନ୍ଧରେ ଦୁହେଁ ଜୁଲି
ବେନ୍ଦରା ମାନ୍‌କେ ମାରି ଦେଲେ
ଆଏଁଖ ଚହଟା ଗୁଲି ।'

ମାଧୋ ସିଂଙ୍କର ଚତୁର୍ଥ ପୁତ୍ର ଐର ସିଂ ନିଜ ସମର୍ଥକମାନଙ୍କ ସହିତ ଜଙ୍ଗଲରେ ଅବସ୍ଥିତ ଏକ ଗୁମ୍ଫାରେ 'ସାଇଦୁଲି'ରେ ଅବସ୍ଥାନ କରୁଥିଲେ । ଏହି ଗୁମ୍ଫା ମଧ୍ୟରେ ରହି ଅତ୍ୟାଚାରୀ ଇଂରେଜମାନଙ୍କୁ ପ୍ରଚଣ୍ଡ ଗରିଲା ଆକ୍ରମଣ କରୁଥିଲେ । ଇଂରେଜମାନେ ଏଥିରେ ଅତିଷ୍ଠ ହୋଇ ନିଜ ସମର୍ଥକ ଜାରିଙ୍ଗ ଗାଁର ଦାମ ଗଡ଼ତିଆକୁ ଐର ସିଂର ସନ୍ଧାନ ପାଇଁ ନିର୍ଦ୍ଦେଶ ଦେଲେ । ଦେଶ ଦ୍ରୋହୀ ଦାମ ଗଡ଼ତିଆ ଏହି ଜଘନ୍ୟ କାର୍ଯ୍ୟରେ ସନୁଭଟ ଓ ଫଗୁନୀ ଭଟନୀକୁ ନିଯୋଜିତ କରି ଶେଷରେ ସଫଳତା ପାଇଲା । ଐର ସିଂ ଆଶ୍ରୟ ନେଉଥିବା ସାଇଦୁଲିର ସନ୍ଧାନ ପାଇ ଏହାର ମୁହଁରେ ଇଂରେଜମାନେ ଅଗ୍ନି ସଂଯୋଗ କଲେ । ପରିଶେଷରେ ଐର ସିଂ ଏହି ଗୁମ୍ଫା ମଧ୍ୟରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ମାଧୋ ସିଂଙ୍କର ଅନ୍ୟତମ ଲଢୁଆ ପୁତ୍ର ହଟେ ସିଂ ନିଜ ସଂକଳ୍ପରୁ ନହଟି ସଂଗ୍ରାମକୁ ଅବ୍ୟାହତ ରଖିଥିଲେ । ଶେଷରେ ଇଂରେଜମାନଙ୍କ ହାତରେ ଧରାପଡ଼ି କଳାପାଣି ଦଣ୍ଡରେ ଦଣ୍ଡିତ ହେଲେ । ଘେଁସ ଅଞ୍ଚଳର ଲୋକଗୀତଗୁଡ଼ିକରେ ସେ ଅଞ୍ଚଳର ସ୍ୱାଧୀନତା ସଂଗ୍ରାମର ଚିତ୍ର ପ୍ରତିଫଳିତ ହୁଏ -

'ସାଇ ଦୁଲି ଲୁକି ଥିଲା ଅଇରି ସିଂହ ମଲା,
ନାଇଁ ହଟଲା ହଟେ ସିଂହ କଲା ପାଏନ୍ ଗଲା ।'

ମାଧୋ ସିଂ ତାଙ୍କର ପୁତ୍ରମାନେ ଦେଶ ମାତୃକାର ଆହ୍ୱାନକୁ ଭୁଲି ନପାରି ଇଂରେଜମାନଙ୍କୁ ଓ ତାଙ୍କର ସ୍ୱାର୍ଥପର ସମର୍ଥକମାନଙ୍କୁ ପ୍ରବଳ ଆକ୍ରମଣ କଲେ । ମାଧୋ ସିଂଙ୍କର ସୁପୁତ୍ର କୁଞ୍ଜଲ ସିଂ ଆକ୍ରମଣ କରି କେତେକ ଇଂରେଜମାନଙ୍କୁ ଆହତ ଓ ନିହତ କରିଥିଲେ । ଏହାର ଏକ ସୁନ୍ଦର ତଥା ହୃଦୟସ୍ପର୍ଶୀ ବର୍ଣ୍ଣନା ସମ୍ବଲପୁରୀ ଲୋକଗୀତରେ ଦେଖାଯାଏ । ବର୍ତ୍ତମାନ ମଧ୍ୟ ଲୋକମାନଙ୍କ ମନରେ ଏହି ଗୀତ ଉଜ୍ଜୀବିତ ରହିଅଛି ।

'ଦୁକ୍‌ତା ଭାଙ୍ଗର ଗୁନ୍ ପିଲେ
ମାଗୁର ମାଛର ମୁଁଡ଼,
କୁଞ୍ଜଲ ସିଂହ ସାହେବ କେ ମାଇଲା
ଅଲୁ ପଡ଼ଲା ମୁଡ଼ ।'

କେପଟେନ ଇ.ଜି. ଉଡ୍ ସଂଗ୍ରାମୀ ବୀର ମାଧୋ ସିଂ ଓ ତାଙ୍କର ପୁତ୍ରମାନଙ୍କର ସଫଳ ଆକ୍ରମଣକୁ ସାମ୍ନା କରିପାରିନଥିଲେ । ୧୮୫୮ ଖ୍ରୀଷ୍ଟାବ୍ଦ ଜାନୁଆରୀରେ କେପଟେନ୍ ସେକ୍ସିପିୟର ଅଧିକ ସାମରିକ ବାହିନୀ ଓ ଅସ୍ତ୍ରଶସ୍ତ୍ର ଆଣି ସିଂଘୋଡ଼ା ଘାଟି ଆକ୍ରମଣ କଲେ । ଏହି ଆକ୍ରମଣକୁ ବିଦ୍ରୋହୀମାନେ ସାମ୍ନା କରିପାରିନଥିଲେ । ମାଧୋ ସିଂ ପାହଡ଼ ସିଂଘୋଡ଼ା ଘାଟିର ଦାୟିତ୍ୱରେ ଥିବା ସମୟରେ କେପ୍‌ଟେନ୍ ଉଡ୍‌ବ୍ରିଜ୍ ଆକ୍ରମଣ କରିଥିଲେ । ମାଧୋ ସିଂଙ୍କ ନିର୍ଣ୍ଣାୟକ ଓ ନିର୍ଭୁଲ ଆକ୍ରମଣରୁ କେପ୍‌ଟେନ୍ ନିଜକୁ ରକ୍ଷା କରିପାରିନଥିଲେ । ମାଧୋ ସିଂ ତାଙ୍କର ମସ୍ତକ ଛେଦନ କରି ଗୋଟିଏ ବୃକ୍ଷରେ ଝୁଲାଇ ଦେଇଥିଲେ । ଏହି ଆକ୍ରମଣରୁ ଦୁଇଜଣ ଇଂରେଜ ସୈନ୍ୟ ମହବତ ଖାଁ ଓ ମଥୁରା ପାଣ୍ଡେ ନିଜର ଜୀବନ ରକ୍ଷା କରିବାରେ ସମର୍ଥ ହୋଇଥିଲେ । ସମ୍ବଲପୁରର ନୂତନ କେପଟେନ୍ ଏନ୍.ସି. ବାରଲୋ ଅଧିକ ସଂଖ୍ୟକ ସୈନ୍ୟ ଆଣି ତା.୧୪.୧୨.୧୮୫୮ରିଖରେ ପାହାଡ଼ ଶ୍ରୀଗିଡ଼ା ଘାଟିରେ ଝୁଲୁଥିବା କେପଟନ ଉଡ୍‌ବ୍ରିଜଙ୍କ କଟାମୁଣ୍ଡକୁ ଉଦ୍ଧାର କଲେ । ଏହାପରେ କେପଟନ ବାରଲୋ ମାଧୋ ସିଂ ଓ ତାଙ୍କର ଅନ୍ୟ ତିନିପୁତ୍ରଙ୍କୁ ଧରାଇ ଦେଲେ ୫ ଖଣ୍ଡ ଗ୍ରାମ ପୁରସ୍କାର ଦେବା ପାଇଁ ଘୋଷଣା କଲେ । ମାଧୋ ସିଂ କିଛି ଦିନ ବିଶ୍ରାମ ନେବାପାଇଁ ମାଟିଆ ଭାଟୀ ଗ୍ରାମକୁ ଯାଉଥିବା ସମୟରେ ଇଂରେଜମାନେ ତାଙ୍କୁ ବାଟରେ ଗିରଫ କଲେ । **ତାଙ୍କର କୌଣସି ବିଚାର କରାନଯାଇ ସମ୍ବଲପୁରରେ ୧୮୫୮ ମସିହା ଡିସେମ୍ବର ୩୧ ତାରିଖରେ ଇଂରେଜମାନେ ତାଙ୍କୁ ଫାଶୀ ଦେଲେ । ତେଣୁ ବୀର ପୁରୁଷ ମାଧୋ ସିଂଙ୍କ ଏହି ବଳିଦାନ ଦିବସକୁ ଓଡ଼ିଆ ଜାତି ବୀରତା ଦିବସ ରୂପେ ପାଳନ କରୁଅଛି ।**

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା

---

# ଭୁବନେଶ୍ୱରର ତିନୋଟି ନିର୍ବାଚନମଣ୍ଡଳୀ ବ୍ୟତୀତ ଅବଶିଷ୍ଟ ନିର୍ବାଚନମଣ୍ଡଳୀର ଭୋଟଦାତା ୨,୬୪,୨୦,୧୭୦

ଭାରତର ନିର୍ବାଚନ କମିଶନଙ୍କ ପକ୍ଷରୁ ୨୦୦୯ ମସିହା ଜାନୁଆରୀ ପହିଲାକୁ ଯୋଗ୍ୟତାସୂଚକଭାବେ ଗ୍ରହଣ କରାଯାଇ ରାଜ୍ୟର ସମସ୍ତ ୧୪୭ଟି ବିଧାନସଭା ନିର୍ବାଚନମଣ୍ଡଳୀର ଭୋଟର ତାଲିକା ସଂଶୋଧନ କରାଯାଇଛି । ଭୁବନେଶ୍ୱରର ୩ଟି ନିର୍ବାଚନ ମଣ୍ଡଳୀକୁ ବାଦ୍ ଦେଇ ୧୪୪ଟି ନିର୍ବାଚନମଣ୍ଡଳୀର ଚୂଡ଼ାନ୍ତ ଭୋଟର ତାଲିକା ଗତକାଲି ପ୍ରକାଶିତ ହୋଇଛି । ଆସନ୍ତା ୨୧ ତାରିଖ ଦିନ ଭୁବନେଶ୍ୱରର ୩ ଗୋଟି ନିର୍ବାଚନମଣ୍ଡଳୀର ଚୂଡ଼ାନ୍ତ ଭୋଟର ତାଲିକା ପ୍ରକାଶ ପାଇବ ।

ପ୍ରକାଶ ପାଇଥିବା ୧୪୪ଟି ନିର୍ବାଚନ ମଣ୍ଡଳୀର ଚୂଡ଼ାନ୍ତ ଭୋଟର ତାଲିକା ଅନୁଯାୟୀ ମୋଟ ଭୋଟର ହେଉଛି ୨ କୋଟି ୬୪ ଲକ୍ଷ ୨୦ ହଜାର ୧୭୦ । ଏଥିରୁ ପୁରୁଷ ଭୋଟରଙ୍କ ସଂଖ୍ୟା ଏକ କୋଟି ୩୬ ଲକ୍ଷ ୨୪ ହଜାର ୩୫୮ ଏବଂ ମହିଳା ଭୋଟର ହେଉଛନ୍ତି ଏକ କୋଟି ୨୭ ଲକ୍ଷ ୯୫ ହଜାର ୮୧୮ । ଏହି ଚୂଡ଼ାନ୍ତ ଭୋଟର ତାଲିକାରେ ୫ ଲକ୍ଷ ୨୧ ହଜାର ୬୨୩ ଜଣ ନୂତନ ଭୋଟ ସାମିଲ ହୋଇଥିବାବେଳେ ମୃତ ବା ସ୍ଥାନାନ୍ତରିତ ହୋଇ ଯାଇଥିବା ଯୋଗୁଁ ଏକ ଲକ୍ଷ ୮୭ ହଜାର ୧୭୯ ଭୋଟରଙ୍କ ନାମ ବାଦ୍ ଦିଆଯାଇଛି । ୮୪ ପ୍ରତିଶତ ଭୋଟରଙ୍କୁ ଫଟୋ ପରିଚୟପତ୍ର ପ୍ରଦାନ କରାଯାଇଥିବା ବେଳେ ୭୭ ପ୍ରତିଶତ ଭୋଟରଙ୍କ ଫଟୋ ପ୍ରକାଶିତ ଭୋଟର ତାଲିକାରେ ରହିଛି । ମୋଟ ଭୋଟରଙ୍କ ମଧ୍ୟରୁ ୨ କୋଟି ୨୨ ଲକ୍ଷ ୪୩ ହଜାର ୮୪୮ ଭୋଟରଙ୍କୁ ଫଟୋ ପରିଚୟପତ୍ର ପ୍ରଦାନ କରାଯାଇଛି ଏବଂ ୨ କୋଟି ୩ ଲକ୍ଷ ୯ ହଜାର ୭୫୬ ଜଣଙ୍କର ଫଟୋ ପ୍ରକାଶିତ ଭୋଟର ତାଲିକାରେ ରହିଛି । ୧୪୪ଟି ବିଧାନସଭା ନିର୍ବାଚନମଣ୍ଡଳୀ ମଧ୍ୟରୁ ୨୭ଟି ନିର୍ବାଚନମଣ୍ଡଳୀରେ ୨ ଲକ୍ଷରୁ ଅଧିକ ଭୋଟର ଥିବାବେଳେ ନିର୍ବାଚନ ମଣ୍ଡଳୀରେ ଦୁଇ ଲକ୍ଷରୁ କମ୍ ଭୋଟର ରହିଛନ୍ତି । ଆଳି ନିର୍ବାଚନ ମଣ୍ଡଳୀରେ ସର୍ବାଧିକ ୨ ଲକ୍ଷ ୨୫ ହଜାର ୯୪୨ ଜଣ ଭୋଟର ଥିବାବେଳେ ବାଲିଗୁଡ଼ା ନିର୍ବାଚନମଣ୍ଡଳୀରେ ସର୍ବନିମ୍ନ ଏକ ଲକ୍ଷ ୧୯ ହଜାର ୨୯୨ ଜଣ ଭୋଟର ବୋଲି ମୁଖ୍ୟ ନିର୍ବାଚନ ଅଧିକାରୀଙ୍କ କାର୍ଯ୍ୟାଳୟ ସୂତ୍ରରୁ ପ୍ରକାଶ ।

(ସୂଚନା ଓ ଲୋକ ସଂପର୍କ ବିଭାଗ)

# ସ୍ୱାସ୍ଥ୍ୟରକ୍ଷାରେ ଆୟୁର୍ବେଦ ଓ ଯୋଗର ମହତ୍ୱ

ଡାକ୍ତର ଦୀନବନ୍ଧୁ ମହାରଣା

**ଆ**ୟୁର୍ବେଦ ଓ ଯୋଗ ପ୍ରାଚୀନ ଭାରତୀୟ ସଂସ୍କୃତିର ସମଗ୍ର ମାନବ ଜାତିକୁ ଦୁଇଟି ଅମୂଲ୍ୟ ଉପହାର । ଏହା ଭାରତୀୟ ନିଜସ୍ୱ ଚିକିତ୍ସା ବିଜ୍ଞାନର ଦୁଇଟି ଅମୂଲ୍ୟ ପରିପ୍ରକାଶ । ଏହା ସମଗ୍ର ମାନବ ଜାତିକୁ ରୋଗ ଦୁଃଖ କ୍ଳେଶରୁ ମୁକ୍ତ କରି ଏକ ସୁସ୍ଥ ଓ ପରିପୂର୍ଣ୍ଣ ଜୀବନଯାପନ କରିବାରେ ଦୁଇଟି ଅମୋଘ ଉପାୟ । ମଣିଷର ତଥା ସୃଷ୍ଟିର ସମସ୍ତ ଜୀବନଧାରୀ ପ୍ରାଣୀଙ୍କ କକ୍ଷେ ଏହା ହିଁ ହେଉଛି ଆରୋଗ୍ୟର ସର୍ବୋତ୍କୃଷ୍ଟ ମାର୍ଗ । ଉଭୟ ଆୟୁର୍ବେଦ ଓ ଯୋଗର ଲକ୍ଷ୍ୟ ହେଉଛି ମଣିଷକୁ ବିକାଶ ବା ଉନ୍ନତିର ଶୀର୍ଷରେ ପହଁଚାଇ ତାକୁ ଧର୍ମ, ଅର୍ଥ, କାମ ଏବଂ ମୋକ୍ଷପ୍ରାପ୍ତି ପାଇଁ ସମର୍ଥ କରିବା । ଭାରତୀୟ ସଂସ୍କୃତିରେ ଧର୍ମ, ଅର୍ଥ, କାମ ଓ ମୋକ୍ଷକୁ ଜୀବନର ଚାରୋଟି ମୂଳଲକ୍ଷ୍ୟ ବୋଲି ମାନ୍ୟତା ଦିଆଯାଇଛି ଏବଂ ଏହି ପୁରୁଷାର୍ଥ ଚତୁଷ୍ଟୟକୁ ପ୍ରାପ୍ତି କରିବାରେ ସୁସ୍ଥ ଜୀବନ ଏବଂ ଦୀର୍ଘାୟୁ ପରମ ଆବଶ୍ୟକତା । ତେଣୁ ଏ ସମ୍ପର୍କରେ ପ୍ରାଚୀନ ବିଦ୍ୱାନଗଣ ମତ ଦେଇଛନ୍ତି ଯେ-

'ଧର୍ମାର୍ଥ କାମମୋକ୍ଷାଣାଂ ଆରୋଗ୍ୟଂ ମୂଳମୁତ୍ତମମ୍ ।
ରୋଗସ୍ତସ୍ୟାପହର୍ତାରଃ ଶ୍ରେୟୋସୋ ଜୀବିତରସ୍ୟ ॥'

ଅର୍ଥାତ୍ ଧର୍ମ, ଅର୍ଥ, କାମ ତଥା ମୋକ୍ଷ-ଉକ୍ତ ଚାରୋଟିର ପ୍ରାପ୍ତି କେବଳ ନିରୋଗ ଶରୀରଦ୍ୱାରା ହିଁ ସମ୍ଭବ । ତେଣୁ ଏସବୁର ମୂଳ, ଆରୋଗ୍ୟଯୁକ୍ତ ଦୀର୍ଘଜୀବନ । ମହାକବି କାଳିଦାସଙ୍କ ଉକ୍ତିରେ 'ଶରୀର ମାଦ୍ୟଂ ଖଳୁ ଧର୍ମ ସାଧନମ୍' । ଅର୍ଥାତ୍ ଶରୀର ହିଁ ମାନବ ଜୀବନର ସମସ୍ତ କାର୍ଯ୍ୟକୁ ସମ୍ପାଦନ କରିବାରେ ଏକ ପ୍ରମୁଖ ଧର୍ମ ସାଧନ । ସେଥିପାଇଁ ଏହି ଶରୀରରୂପୀ ସାଧନକୁ ରକ୍ଷା କରିବା ଆମ ସମସ୍ତଙ୍କର ସର୍ବପ୍ରଥମ କର୍ତ୍ତବ୍ୟ ହେବା ଉଚିତ । ଏହି ଦଗରେ ଆୟୁର୍ବେଦ ଆବହମାନ କାଳରୁ ସ୍ୱାସ୍ଥ୍ୟରକ୍ଷା କ୍ଷେତ୍ରରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଆସିଛି । ଆୟୁର୍ବେଦର ବ୍ୟାଖ୍ୟା କରି ମହର୍ଷି ଚରକ କହନ୍ତି-

ହିତାହିତଂ ସୁଖଂଦୁଃଖଂ ଆୟୁସ୍ତସ୍ୟ ହିତାହିତମ୍ ।
ମାନଂ ଚ ତଚ୍ଚ ଯତ୍ରୋକ୍ତଂ ଆୟୁର୍ବେଦଃସଃ ଉଚ୍ୟତେ ॥
ତସ୍ୟାୟୁଷଃ ପୁଣ୍ୟତମୋ ବେଦୋବେଦବିଦାଂ ମତଃ ।
ବକ୍ଷତେ ଯନ୍ମନୁଷ୍ୟାଣାଂ ଲୋକୟୋରଭୟୋର୍ହିତଃ ॥

ଅର୍ଥାତ୍ ଯେଉଁ ଶାସ୍ତ୍ରରେ ହିତ ଆୟୁ, ଅହିତ ଆୟୁ, ସୁଖ ଆୟୁ ତଥା ଦୁଃଖ ଆୟୁର ବର୍ଣ୍ଣନା ରହିଛି । ହିତକର-ଅହିତକର ଆହାର, ବିହାର, ଔଷଧର ବର୍ଣ୍ଣନା, ଅଳ୍ପାୟୁ, ମଧ୍ୟମାୟୁ, ଦୀର୍ଘାୟୁର ଲାକ୍ଷଣିକ ବିବରଣୀ, ଅରିଷ୍ଟ ଲକ୍ଷଣ, ରୋଗ ତଥା ସେଗୁଡ଼ିକର ନିବାରଣ ଉପାୟର ବର୍ଣ୍ଣନା ରହିଛି । ସେହି ଶାସ୍ତ୍ର ହିଁ ଆୟୁର୍ବେଦ । ଏଥିରୁ ସ୍ପଷ୍ଟ ଜଣାପଡ଼େ ଯେ ଆୟୁର୍ବେଦ ହିଁ ସ୍ୱାସ୍ଥ୍ୟର ସମସ୍ତ କ୍ଷେତ୍ରକୁ ନିଜ ମଧ୍ୟରେ କବଳିତ କରିଛି ।

ଅପରପକ୍ଷେ ଯୋଗ ଓ ଆୟୁର୍ବେଦର ଏକ ନିବିଡ଼ ସମ୍ପର୍କ ରହିଛି । ଯୋଗ ଭାରତୀୟ ସଂସ୍କୃତିର ଅନ୍ୟତମ ମହାନ ଅବଦାନ । ସ୍ୱାସ୍ଥ୍ୟରକ୍ଷାରେ ଯୋଗର ମହତ୍ୱକୁ ଏବେ ସମଗ୍ର ବିଶ୍ୱ ସ୍ୱୀକାର କରିସାରିଛି । ଯୋଗ କେବଳ ଏକ ସ୍ୱାସ୍ଥ୍ୟଚର୍ଯ୍ୟାର ବିଷୟ ନୁହେଁ । ଅଧିକନ୍ତୁ ଏହା ଏକ ସମ୍ପୂର୍ଣ୍ଣ ଜୀବନ ପଦ୍ଧତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଅଧିକାଂଶ ଯୋଗକୁ କେବଳ ଆସନ, ପ୍ରାଣାୟାମ ଆଦି ଶାରୀରିକ କ୍ରିୟାର ନାମ ଦେଇଥାନ୍ତି, କିନ୍ତୁ ବାସ୍ତବପକ୍ଷେ ଏହାର ଅର୍ଥ ଅଧିକ ବ୍ୟାପକ । ଯୋଗ ଏକ ଜୀବନ ଦର୍ଶନ ଓ ବଞ୍ଚିବାର ତଥା କର୍ମ କରିବାର ଏକ କୌଶଳ ।

ସେଥିପାଇଁ ଗୀତାରେ ଲେଖା ଅଛି ଯେ- 'ଯୋଗଃ କର୍ମେଷୁ କୌଶଳମ୍' । ନିଜର କର୍ମକୁ କୁଶଳତାପୂର୍ବକ କରିବା ହିଁ ଯୋଗ । 'ଯୋଗ' ଶବ୍ଦ ଉତ୍ପତ୍ତି ସଂସ୍କୃତ ଭାଷାରେ ଯୁଜ୍ ଧାତୁରୁ ହୋଇଛି ଯାହାର ଅର୍ଥ ସମ୍ମିଳିତ ହେବା ବା ଏକୀକରଣ ହେବା । ସୁତରାଂ ଯୋଗ ଶବ୍ଦର ବ୍ୟାଖ୍ୟାରୁ ସୃଷ୍ଟି ଏହି ଏକୀକରଣର ଅର୍ଥ

ଜୀବାତ୍ମା ଏବଂ ପରମାତ୍ମାର ଏକୀକରଣ ଏବଂ ମନୁଷ୍ୟର ବ୍ୟକ୍ତିତ୍ୱର ଶାରୀରିକ, ମାନସିକ, ବୌଦ୍ଧିକ ତଥା ଆଧାତ୍ମିକ ପକ୍ଷର ଏକୀକରଣ ଏବଂ ସର୍ବୋପରି ବ୍ୟକ୍ତିର ସମାଜ ସହ ଏକୀକରଣ । ଏହା ହିଁ ଯୋଗର ସର୍ବୋତ୍ତମ ଓ ସମ୍ପୂର୍ଣ୍ଣ ପରିଭାଷା । ଯୋଗର ଅଷ୍ଟାଙ୍ଗବିଧି ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଏବଂ ସମାଧି ଯୋଗଦ୍ୱାରା ବୃହତ୍ତର ଲକ୍ଷ୍ୟ ପାଇବା ପାଇଁ କେବଳ ମାଧ୍ୟମ ଅଟେ । ମନୁଷ୍ୟ ଜୀବନର ସର୍ବୋତ୍ତମ ବିକାଶ ଯୋଗ ବ୍ୟତୀତ ହୁଏତ ସମ୍ଭବ ହୋଇପାରେ ନାହିଁ । ଭଗବାନ ଶ୍ରୀକୃଷ୍ଣ ଗୀତାରେ ଯେଉଁ କର୍ମଯୋଗ, ଭକ୍ତିଯୋଗ ଓ ଜ୍ଞାନଯୋଗ ଇତ୍ୟାଦି ବିଷୟରେ ଅର୍ଜୁନଙ୍କୁ କହିଛନ୍ତି ତାହା ମଧ୍ୟ ଯୋଗର ସୂକ୍ଷ୍ମ ଓ ବ୍ୟାପକ ରୂପ । କହିବା ଅନାବଶ୍ୟକ ଯେ ଯୋଗ ଓ ଆୟୁର୍ବେଦ ପରସ୍ପର ଅଭିନ୍ନ ଓ ଅବିଚ୍ଛେଦ୍ୟ । ଉଭୟର ମୂଳଉତ୍ସ ବେଦ ଓ ବୈଦିକ ବାଙ୍ମୟ । ବେଦ ବିଶେଷକରି ଅଥର୍ବ ବେଦରୁ ଆୟୁର୍ବେଦ ସମ୍ବନ୍ଧରେ ଯଥେଷ୍ଟ ଜ୍ଞାନର ଉତ୍ପତ୍ତି ହୋଇଛି । ସେଥିପାଇଁ ଅନେକ ବିଦ୍ୱାନ ଆୟୁର୍ବେଦକୁ ଅଥର୍ବ ବେଦର ଉପବେଦ ବା ପଞ୍ଚମ ବେଦ ରୂପେ ମାନ୍ୟତା ଦେଇଛନ୍ତି । କାଳକ୍ରମେ ଏହା ଏକ ସୁବ୍ୟବସ୍ଥିତ ଚିକିତ୍ସା ଶାସ୍ତ୍ର ରୂପେ ମାନ୍ୟତା ଲାଭ କରିପାରିଛି ।

ଶାରୀରିକ, ମାନସିକ ସୁସ୍ଥତା ସହ ବିଚାରଗତ ଶୁଦ୍ଧତା ଓ ଉତ୍ତମ ସାମାଜିକ ସମ୍ପର୍କ ରଖିପାରିବାର ସାମର୍ଥ୍ୟକୁ ମୋଟ ଉପରେ ସ୍ୱାସ୍ଥ୍ୟ ବୋଲି ମାନ୍ୟତା ଦିଏ ।

ଆୟୁର୍ବେଦକୁ ମଧ୍ୟ ଆଠଟି ଅଙ୍ଗରେ ବିଭକ୍ତ କରାଯାଇଛି । ପ୍ରତ୍ୟେକ ଅଙ୍ଗ ଉପରେ ସଂହିତା ପ୍ରଣୟନ କରାଯାଇଛି । ଏଗୁଡ଼ିକ ମଧ୍ୟରୁ ଆଜି କେବଳ ଚରକ ସଂହିତା, ସୁଶ୍ରୁତ ସଂହିତା, ବାଗ୍‌ଭଟ୍ଟ ସଂହିତା, କାଶ୍ୟମ ସଂହିତା ଏବଂ ମେଳ ଆଦି ସଂହିତାର ବିଶାଳତାରୁ ସହଜରେ ଏହାର ପରିସର ଯେ କେତେ ବ୍ୟାପକ ତାହା ଅନୁମାନ କରାଯିବା ଉଚିତ । ପ୍ରାଚୀନ ମହର୍ଷିଗଣ ଆଧୁନିକ ଚିକିତ୍ସା ବିଜ୍ଞାନ ପରି ଆୟୁର୍ବେଦକୁ ଆଠ ଭାଗରେ ବିଭକ୍ତ କରିଛନ୍ତି, ଯଥା- (୧) ଶଲ୍ୟ ଚିକିତ୍ସା, (୨) ଶାଲାକ୍ୟ ଚିକିତ୍ସା, (୩) କାୟ ଚିକିତ୍ସା, (୪) ସ୍ତ୍ରୀ ରୋଗ ଓ କୌମାର ଭୃତ୍ୟ, (୫) ଭୂତ ବିଦ୍ୟା, (୬) ଅଗଦତନ୍ତ୍ର, (୭) ରସାୟନ, (୮) ବାଜୀକରଣ । ଆୟୁର୍ବେଦର ପ୍ରବର୍ତ୍ତକ ଭଗବାନ ଧନ୍ୱନ୍ତରୀଙ୍କ ଉପଲକ୍ଷେ କୁହାଯାଇଛି ଯେ ସାଗର ମନ୍ଥନରୁ ଯେଉଁସବୁ ଅମୂଲ୍ୟ ଉପହାର ମିଳିଥିଲା ସେମାନଙ୍କ ମଧ୍ୟରୁ ଧନ୍ୱନ୍ତରୀ ଥିଲେ ଅନ୍ୟତମ । ଧନ୍ୱନ୍ତରୀ ସାଗର ମଧ୍ୟରୁ ଏକ ହସ୍ତରେ ଅମୃତକଳସ ଓ ଅନ୍ୟ ହସ୍ତରେ ଆୟୁର୍ବେଦ ଗ୍ରନ୍ଥଧରି ବାହାରି ଆସିଥିଲେ । ଆୟୁର୍ବେଦର ଉତ୍ପତ୍ତି ଯେଉଁଠାରୁ ହୋଇଥାଉ, ମାନବର ସ୍ୱାସ୍ଥ୍ୟରକ୍ଷାରେ ଶବ୍ଦର ବ୍ୟାଖ୍ୟାରୁ ଜଣାପଡ଼େ ଯେ 'ଆୟୁ'ର ଅର୍ଥ ପ୍ରାଣ ବା ଜୀବନ ଏବଂ ସମ୍ପୂର୍ଣ୍ଣ ଅର୍ଥ ଜୀବନ ସମ୍ବନ୍ଧୀୟ ବିଜ୍ଞାନ ।

ଭୌତିକ ଦୃଷ୍ଟିରୁ ମାନବ ଜୀବନର ପରମ ଲକ୍ଷ୍ୟ ହେଲା ସୁଖଭୋଗ କରିବା । ଏହି ସୁଖଭୋଗ ମୁଖ୍ୟତଃ ଦୁଇଟି ତତ୍ତ୍ୱ ଉପରେ ନିର୍ଭର କରେ । ପ୍ରଥମତଃ, ସୁଖ ଭୋଗ କରିବାର କ୍ଷମତା ଏବଂ ଦ୍ୱିତୀୟତଃ, ସୁଖଭୋଗ କରିବାର ସାଧନା । ଯେଉଁମାନେ ନିଜ ଜୀବନକାଳ ମଧ୍ୟରେ ଏହି ଦୁଇଟି ତତ୍ତ୍ୱ ଲାଭ କରିଥାନ୍ତି ସେମାନେ ସୁଖ ଆୟୁ ଭୋଗ କରନ୍ତି । ପୁନଶ୍ଚ, ବ୍ୟକ୍ତିର ସୁଖ ସମଷ୍ଟିର ସୁଖ ଉପରେ ନିର୍ଭର କରେ । ସ୍ୱାସ୍ଥ୍ୟ ଓ ସାଧନ ଏହି ଦୁଇଟି ଉପାଦାନ ରହିଥାଉ କିମ୍ବା ସେହି ଦୁଇଟି ମଧ୍ୟରୁ କୌଣସିଟିର ଅଭାବ ରହିଥାଉ ଯେଉଁ ବ୍ୟକ୍ତି ନିଜର ସଦ୍‌ଗୁଣ ଓ ସଦାଚାରଦ୍ୱାରା ନିଜକୁ ନିଜର ସମୂହ କଲ୍ୟାଣ ଦିଗରେ ପ୍ରେରିତ କରିପାରେ ସେହି ବ୍ୟକ୍ତି ହିତାୟୁର ଅଧିକାରୀ ହୋଇପାରେ । ଠିକ୍ ସେହିପରି ଯେଉଁ ବ୍ୟକ୍ତି ନିଜର, ପରିବାରର ଓ ସମାଜର କଲ୍ୟାଣ ବିପରୀତ କାର୍ଯ୍ୟ କରେ ସେ ବ୍ୟକ୍ତିର ଆୟୁକୁ ଅହିତାୟୁ ବିବେଚନା କରାଯାଏ ।

କହିବାର ତାତ୍ପର୍ଯ୍ୟ ଏହି ଯେ ଆୟୁର୍ବେଦର ଉଦ୍ଦେଶ୍ୟ କେବଳ ସୁସ୍ଥ ଓ ନିରୋଗ ଶରୀର ସୃଷ୍ଟି କରିବା ନୁହେଁ, ଅଧିକନ୍ତୁ ମନୁଷ୍ୟର ଆୟୁକୁ ସୁଖାୟୁ ଏବଂ ହିତାୟୁ କରିବାର ମଧ୍ୟ ଏହାର ମୁଖ୍ୟ ଉଦ୍ଦେଶ୍ୟ । ଆୟୁର୍ବେଦସମ୍ମତ ପୂର୍ଣ୍ଣାଙ୍ଗ ସ୍ୱାସ୍ଥ୍ୟ ବା ସମ୍ପୂର୍ଣ୍ଣ ସ୍ୱାସ୍ଥ୍ୟର ପରିଭାଷା ମଧ୍ୟ ବ୍ୟାପକ । ଏହା କେବଳ ରୋଗମୁକ୍ତ ସ୍ୱାଭାବିକ ଶରୀରକୁ ସ୍ୱାସ୍ଥ୍ୟ ବୋଲି ବିବେଚନା କରେ ନାହିଁ । ଶାରୀରିକ, ମାନସିକ ସୁସ୍ଥତା ସହ ବିଚାରଗତ ଶୁଦ୍ଧତା ଓ ଉତ୍ତମ ସାମାଜିକ ସମ୍ପର୍କ ରଖିପାରିବାର ସାମର୍ଥ୍ୟକୁ ମୋଟ ଉପରେ ସ୍ୱାସ୍ଥ୍ୟ ବୋଲି ମାନ୍ୟତା ଦିଏ । ଏହି ସମ୍ବନ୍ଧରେ ମହର୍ଷି ସୁଶ୍ରୁତଙ୍କଦ୍ୱାରା ପ୍ରଣୀତ ସ୍ୱାସ୍ଥ୍ୟର ବ୍ୟାପକ ଏବଂ ବିଧେୟାତ୍ମକ ପରିକଳ୍ପନା ପ୍ରତି ମଧ୍ୟ ଧ୍ୟାନ ଦେବା ଯୋଗ୍ୟ ଅଟେ ।

ଆୟୁର୍ବେଦ ଅନୁଯାୟୀ ସୁସ୍ଥ ବ୍ୟକ୍ତି ତାହାକୁ ବିବେଚନା କରେ ଯାହାର ଶରୀର, ଇନ୍ଦ୍ରିୟ ଏବଂ ମନ ସହିତ ଆତ୍ମା ମଧ୍ୟ

ପ୍ରସନ୍ନ ରହିଥାଏ ଏବଂ ସେହି ବ୍ୟକ୍ତିର ମନରେ କୌଣସି ଭାର ବା ଅପରାଧବୋଧ ନଥାଏ । ଏହିଭଳି ବ୍ୟକ୍ତିକୁ ସୁସ୍ଥ ବ୍ୟକ୍ତି କୁହାଯାଏ ।

ଆୟୁର୍ବେଦ ଭଳି ଯୋଗର ବିକାଶ ମଧ୍ୟ ଏକ ଆଧ୍ୟାତ୍ମିକ ସାଧନା ପଦ୍ଧତି ରୂପେ ଆବିର୍ଭୁତ ହୋଇଛି । ଯୋଗ ମଧ୍ୟ ଆୟୁର୍ବେଦର ସ୍ୱାସ୍ଥ୍ୟର ଉପରୋକ୍ତ ପରିଭାଷାକୁ ସ୍ୱୀକାର କରେ । ଶରୀର ଓ ମନକୁ ସୁସ୍ଥ ରଖିବା ସହ ଆତ୍ମିକ ଆନନ୍ଦର ଉପଲବ୍ଧି କରାଇ ନେବାରେ ଯୋଗ ଏକ ଉତ୍ତମ ମାର୍ଗ ରୂପେ ପ୍ରମାଣିତ ହୋଇସାରିଛି । ଯୋଗର ବ୍ୟାପକତା ଓ ଲୋକପ୍ରିୟତାର ପ୍ରମାଣ ପ୍ରାଚୀନ ସାହିତ୍ୟ, ବେଦ, ଉପନିଷଦ, ପୁରାଣ, ଶ୍ରୀମଦ୍ ଭଗବତ୍ ଗୀତା, ବିଭିନ୍ନ ଧର୍ମ ସମ୍ପ୍ରଦାୟର ଗ୍ରନ୍ଥରେ ଏହାର ଉପସ୍ଥିତିରୁ ଜଣାପଡ଼େ । ଆୟୁର୍ବେଦ ମଧ୍ୟ ଯୋଗ ପ୍ରଭାବରୁ ମୁକ୍ତ ନୁହେଁ । ଆୟୁର୍ବେଦ ଓ ଯୋଗର ପରିପୂରକତା ରହିଛି । ଉଭୟ ସ୍ୱାସ୍ଥ୍ୟରକ୍ଷାରେ ପରସ୍ପରର ସିଦ୍ଧାନ୍ତକୁ ସମର୍ଥନ ଦିଅନ୍ତି ।

ସୁତରାଂ ଯେକୌଣସି ସାଧନା ବା କାର୍ଯ୍ୟର ସଫଳତା ପାଇଁ ଶରୀର ଓ ମନର ସ୍ୱାସ୍ଥ୍ୟରକ୍ଷା ହେବା ଏକାନ୍ତ ଅପରିହାର୍ଯ୍ୟ । ଅସୁସ୍ଥ ଶରୀର ଓ ରୁଗ୍ଣ ମନଦ୍ୱାରା କୌଣସି କାର୍ଯ୍ୟ ସଫଳ ହୋଇପାରେ ନାହିଁ । ଆୟୁର୍ବେଦ ଓ ଯୋଗ ମାଧ୍ୟମରେ ଚିକିତ୍ସା ବ୍ୟବସ୍ଥା ପ୍ରାଚୀନ ହେଲେ ମଧ୍ୟ ମଣିଷର ସ୍ୱାସ୍ଥ୍ୟରକ୍ଷା ଦିଗରେ ଏହାର ପ୍ରଭାବ ସୁସ୍ପଷ୍ଟ । ସମ୍ପ୍ରତି ପାଶ୍ଚାତ୍ୟ ଦେଶମାନଙ୍କରେ ଏହାର ଉପାଦେୟତାକୁ ଉପଲବ୍ଧି କରି ଅସଂଖ୍ୟ ଜନତା ଏହାର ଉପଯୋଗିତାକୁ କାର୍ଯ୍ୟରେ ଲଗାଇବାରେ ସକ୍ଷମ ହୋଇଛନ୍ତି । ବିଭିନ୍ନ ସ୍ଥାନରେ ଯୋଗ ପ୍ରଶିକ୍ଷଣ କେନ୍ଦ୍ରମାନ ସ୍ଥାପନ କରାଯାଇ ମାନସିକ ରୋଗ, ହୃଦ୍‌ରୋଗ ଏବଂ ଅନ୍ୟାନ୍ୟ ବହୁ ସାଂଘାତିକ ରୋଗ କବଳରୁ ମୁକ୍ତି ମିଳିପାରୁଛି ।

ଆୟୁର୍ବେଦ ଓ ଯୋଗ ଉଭୟ ଚିକିତ୍ସା ପଦ୍ଧତିର ଦୁଇଟି ଭିନ୍ନ ରୂପ ହେଲେ ମଧ୍ୟ ଦୁଇଟିର ଉଦ୍ଦେଶ୍ୟ ଏକ । ଏହି ଦୁଇଟିର ବ୍ୟାପକ ଉଦ୍ଦେଶ୍ୟ ହେଉଛି ମାନବକୁ ଆରୋଗ୍ୟ ଲାଭ ପାଇଁ ସାମର୍ଥ୍ୟ ପ୍ରଦାନ କରିବା । ଆୟୁର୍ବେଦର ସ୍ୱାସ୍ଥ୍ୟ ବୃତ୍ତ, ଦିନଚର୍ଯ୍ୟା, ଋତୁଚର୍ଯ୍ୟା, ଆଚାର ରସାୟନ ଆଦି ଅନେକ ସ୍ୱାସ୍ଥ୍ୟରକ୍ଷା ବିଧିର ଉଦ୍ଦେଶ୍ୟ ମନୁଷ୍ୟକୁ ବିଭିନ୍ନ ପ୍ରକାର ରୋଗ ଓ ବିକୃତିରୁ ରକ୍ଷା କରିବା । ଉଭୟର ଶରୀର ଶୋଧନ କ୍ରିୟାଗୁଡ଼ିକ ଯଥା- ଆୟୁର୍ବେଦୀୟ ପଞ୍ଚକର୍ମ ଏବଂ ଯୌଗିକ ଷଟ୍‌କର୍ମର ମୂଳ ଉଦ୍ଦେଶ୍ୟ ଏକ କିନ୍ତୁ ଶୈଳୀ ଭିନ୍ନ ଅଟେ । ଆୟୁର୍ବେଦରେ ବିଶେଷ ରୂପେ ମାନସିକ ରୋଗର ଚିକିତ୍ସା ପାଇଁ ନିର୍ଦ୍ଦିଷ୍ଟ ସତ୍ୱାବଜୟ ଚିକିତ୍ସାରେ ଯୋଗ ବିଧିକୁ ସ୍ଥାନ ଦିଆଯାଇଛି ଏବଂ ଏହିଭଳି ଯୋଗରେ ମଧ୍ୟ ଔଷଧ ଓ ଆୟୁର୍ବେଦର ବିଧି ଉପରେ ଗୁରୁତ୍ୱ ଦିଆଯାଏ । ଏଥିରୁ ଆୟୁର୍ବେଦ ଓ ଯୋଗ ମଧ୍ୟରେ ଥିବା ପାରସ୍ପରିକ ନିର୍ଭରଶୀଳତା ସ୍ପଷ୍ଟ ଜଣାପଡ଼େ । ଆୟୁର୍ବେଦ ଶାରୀରିକ ଅଧ୍ୟୟନ ଏବଂ ଯୋଗ ମନ ତଥା ଆତ୍ମାର ସୁସ୍ଥ ପରିଚାଳନା ନିମିତ୍ତ ଉଦ୍ଦିଷ୍ଟ ବୋଲି ସ୍ୱୀକାର କରାଯାଏ । ତେବେ ଉଭୟ ଆୟୁର୍ବେଦ ଓ ଯୋଗର ଉଦ୍ଦେଶ୍ୟ ଏକ ଏବଂ ତାହା ହେଉଛି ବ୍ୟକ୍ତିକୁ ଶାରୀରିକ, ମାନସିକ, ଆତ୍ମିକ, ଭାବନାତ୍ମକ ଓ ସାମାଜିକ ଦୃଷ୍ଟିକୋଣରୁ ସାମଗ୍ରିକ ଭାବେ ସୁସ୍ଥ ରଖିବା ଏବଂ ବ୍ୟକ୍ତିକୁ ସତ୍-ଚିତ୍-ଆନନ୍ଦର ଉପଲବ୍ଧି କରାଇବା ।

ଯୋଗ ଏବଂ ଆୟୁର୍ବେଦ ଆମ ପ୍ରାଚୀନ ସଂସ୍କୃତିର ଦୁଇଟି ମହାନତମ ଅବଦାନ । ବର୍ତ୍ତମାନ ପରିପ୍ରେକ୍ଷୀରେ ସମଗ୍ର ମାନବ ଜାତିକୁ ରୋଗ, ଦୁଃଖ, ଯନ୍ତ୍ରଣା କବଳରୁ ମୁକ୍ତ କରି ଏକ ସୁନ୍ଦର ଓ କ୍ଲେଶରହିତ ଜୀବନ ନିର୍ମାଣ କରିବା ଦିଗରେ ଏହାର ଆବଶ୍ୟକତା ଅଧିକ ମନେହୁଏ ।

ଓଡ଼ିଶା ଆୟୁର୍ବେଦ ସେବାସଦନ
୧୧୧, ମ୍ୟୁନିସିପାଲିଟି ମାର୍କେଟ
ଓ.ଏମ୍.ପି. ଛକ, କଟକ



# ଉତ୍କଳୀୟ ରେନାସାଁର ଆଦ୍ୟ ରୂପକାର : କବି ସାରଳା ଦାସ

ପ୍ରଭାକର ସ୍ୱାଇଁ

**କ**ବି ଦ୍ରଷ୍ଟା । ସେ ତା'ର ଦିବ୍ୟ ଦୃଷ୍ଟିରେ ମଣିଷ ଓ ସମାଜକୁ ଯେପରି ଦେଖେ ତାହା ହିଁ ପ୍ରତିଫଳିତ ହୁଏ ତା'ର ସୃଷ୍ଟି ମାନସ ମଧ୍ୟରେ । ଅନେକ ସମୟରେ ସ୍ରଷ୍ଟା ସମାଜକୁ ଅବିକଳ ଭାବରେ ତା'ର ସୃଷ୍ଟି ମଧ୍ୟରେ ପ୍ରତିବିମ୍ବିତ କରେ । ମାତ୍ର ବେଳେ ବେଳେ ପାରମ୍ପରିକ ରୀତି ନୀତି ବିରୋଧରେ ଯାଇ ସେ ନିଜର ସୃଷ୍ଟିକୁ ମୌଳିକତାରେ ଭାସ୍ୱର କରେ । ଏ କ୍ଷେତ୍ରରେ ସେ ହୁଏ ବିପ୍ଲବୀ, ଯୁଗନ୍ଧର, ନବ ଜାଗରଣର ମାନ୍ତ୍ରିକ ଏବଂ ପଥ ପ୍ରଦର୍ଶକ । ଆମ ସାହିତ୍ୟର ଆଦିଯୁଗରେ ଏହିପରି ସ୍ରଷ୍ଟା ହେଉଛନ୍ତି ଆମ ମାଟିର ମହାକବି ସାରଳା ଦାସ । ସାରଳା ଦାସ ଥିଲେ ପଞ୍ଚଦଶ ଶତକର ଉତ୍କଳର ନରପତି କପିଳେନ୍ଦ୍ର ଦେବଙ୍କ ସମକାଳୀନ । ଭାରତବର୍ଷରେ କୌଣସି ପ୍ରାନ୍ତୀୟ ଭାଷାରେ ସଂପୂର୍ଣ୍ଣ ମହାଭାରତ ରଚନା ହୋଇନଥିବା ବେଳେ ସାରଳା ଦାସ ହିଁ ପ୍ରଥମ କରି ଆଞ୍ଚଳିକ ଓଡ଼ିଆ ଭାଷାରେ ମହାଭାରତ ପରି ଏକ ମହାକାବ୍ୟ ପୂର୍ଣ୍ଣାଙ୍ଗ ଭାବେ ରଚନା କରିବାର ଯେଉଁ ଅଭିନବ ପ୍ରୟାସ କରିଥିଲେ, ତାହା ଥିଲା ସମଗ୍ର ଭାରତୀୟ ସାହିତ୍ୟରେ ବିରଳ । ସାରଳା ଦାସଙ୍କ ପୂର୍ବରୁ ଆମ ଭାଷାରେ ସାହିତ୍ୟ କହିଲେ କିଛି ଶିଳାଲେଖ, ବ୍ରତଭିତ୍ତିକ ଧର୍ମୋପଦେଶ ବା ଲୋକ ସାହିତ୍ୟ ବ୍ୟତୀତ ସେପରି କିଛି ଆଖି ଝଲସା ସୃଷ୍ଟି ନଥିଲା । ମାତ୍ର ସମକାଳୀନ ପରିବେଶ ସାହିତ୍ୟ ସୃଷ୍ଟି ନିମିତ୍ତ ଖୁବ୍ ଅନୁକୂଳ ଥିଲା । ବିଶେଷ କରି ସମକାଳରେ ଉତ୍କଳର ନରପତି କପିଳେନ୍ଦ୍ର ଦେବ ସ୍ୱୟଂ ପଣ୍ଡିତ ଓ ପଣ୍ଡିତ ସମାଜର ପୃଷ୍ଠପୋଷକ ଥିଲେ । ଭାରତବର୍ଷର ବିଭିନ୍ନ ସ୍ଥାନରେ ସେହି କାଳରେ ଶାସକ ଗୋଷ୍ଠୀଙ୍କ ଅତ୍ୟାଚାର ହେତୁ ଭାରତୀୟ ସନ୍ଥ ଓ ପଣ୍ଡିତମାନେ ପୁରୀକୁ ହିଁ ଜ୍ଞାନ ଚର୍ଚ୍ଚା ନିମିତ୍ତ ନିଜ ନିଜର ନିରାପଦ ସ୍ଥାନ ମଣିଥିଲେ । ସ୍ୱୟଂ କପିଳେନ୍ଦ୍ର ଦେବ ସଂସ୍କୃତ ଭାଷାରେ 'ପର୍ଶୁରାମ ବିଜୟ' ନାମକ ଏକ ନାଟକ ରଚନା ମାଧ୍ୟମରେ ତହିଁରେ ଓଡ଼ିଆ ଗୀତର ସଂଯୋଜନା କରିବା ସହିତ ନିଜ ଜାତିପ୍ରୀତିର ପରିଚୟ ଦେଇଥିଲେ । ଏହି ନାଟକ ରଚନା ମଧ୍ୟରେ ସେ ଓଡ଼ିଆ ପରି ଆଞ୍ଚଳିକ ଲୋକ ଭାଷାକୁ ପ୍ରୋତ୍ସାହିତ କରିଥିଲେ । କପିଳେନ୍ଦ୍ର ଦେବ ସଂସ୍କୃତ ଭାଷାର ଦୃଢ଼ ବନ୍ଧନୀ ମଧ୍ୟରୁ ଓଡ଼ିଆ ଭାଷା-ସାହିତ୍ୟକୁ ମୁକ୍ତ କରିବାର ଯେଉଁ ପ୍ରୟାସ ଆରମ୍ଭ କରିଥିଲେ, ସାରଳା ଦାସଙ୍କ ସୃଷ୍ଟି ମାନସ ସେହି ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଥିଲା ।

ସାରଳା ଦାସଙ୍କ ସୃଷ୍ଟି ମାନସ ସମାଜର ବିଭିନ୍ନ ଦିଗକୁ ଅଙ୍ଗୁଳି ନିର୍ଦ୍ଦେଶ କରିଥିଲେ ହେଁ ତାହା ଥିଲା ମୁଖ୍ୟତଃ ଜୀବନଧର୍ମୀ ଓ ସମାଜଭିତ୍ତିକ । ମହାଭାରତର ଆଦିପର୍ବରେ 'ଗଣେଶଙ୍କ ବନ୍ଦନା' ମଧ୍ୟରେ ସେ ସମଗ୍ର ମହାଭାରତର ମୂଳ କଥାଟିକୁ ଖୁବ୍ ସଂକ୍ଷେପରେ ପ୍ରକଟିତ କରିଥିଲେ । ଏ ସଂପର୍କରେ ସ୍ରଷ୍ଟାଙ୍କର ଉକ୍ତି ଥିଲା -

'ଆଦି ଅନ୍ତ ମଧ୍ୟ ତୁ ଅଟୁ ସର୍ବଥାନେ
ଗ୍ରନ୍ଥ ଭିଆଇଲୁ ତୁ ଭୂତ ଭବିଷ୍ୟ ବର୍ତ୍ତମାନେ ।'

ସାରଳା ଦାସଙ୍କର ଏହି ଉକ୍ତିଟିର ମଧ୍ୟରେ ସେ ଅତୀତ-ବର୍ତ୍ତମାନ-ଭବିଷ୍ୟତକୁ ଏକତ୍ର କରି ଏକ ବିରାଟ ଓ ଦୀର୍ଘ ସରଣୀ ମାନବ ସମାଜ ନିମିତ୍ତ ସୃଷ୍ଟି କରିଛନ୍ତି । ଓଡ଼ିଆ ପାଠକମାନଙ୍କ ନିମିତ୍ତ ଆମ ସାହିତ୍ୟରେ ଅତୀତରେ ସୃଷ୍ଟି ହୋଇଥିବା ସଂକଟ ସହିତ ଭବିଷ୍ୟତର ସେତୁକୁ ସେ ଦୃଢ଼ କରିଛନ୍ତି ଏବଂ ଓଡ଼ିଆ ସାହିତ୍ୟର ଭବିଷ୍ୟତ କିପରି ଉଜ୍ଜ୍ୱଳମୟ ହେବ, ସେଥି ନିମିତ୍ତ ସେ ମହାଭାରତ ରଚନାର ସ୍ତରେ ସ୍ତରେ ସମାଜକୁ ସଚେତନ କରିବାକୁ ଭୁଲିନାହାନ୍ତି ।

ଯେଉଁ ରାଜ୍ୟରେ ପ୍ରଜା ଓ ରାଜା ଗୋଟିଏ ଆସନରେ ଆସୀନ, ଯେଉଁ ରାଜ୍ୟରେ ରାଜା ପ୍ରଜାଙ୍କର ଭାବ ଓ ଚିନ୍ତା ଏକ, ତାହା ହେଉଛି ଏକ

> ଏହି ଦୃଷ୍ଟିରୁ ଚିନ୍ତା କଲେ ଜଣାଯାଏ ଯେ ପଞ୍ଚଦଶ ଶତାବ୍ଦୀର ଓଡ଼ିଶା ଏକ ଗଣତାନ୍ତ୍ରିକ ରାଷ୍ଟ୍ର ଥିଲା ଓ ସାରଳା ଦାସ ଥିଲେ ସମଗ୍ର ଭାରତବର୍ଷରେ ଗଣତନ୍ତ୍ରର ଆଦ୍ୟ ପ୍ରବର୍ତ୍ତକ ।

ଗଣତାନ୍ତ୍ରିକ ରାଷ୍ଟ୍ର । ଏହି ଦୃଷ୍ଟିରୁ ଚିନ୍ତା କଲେ ଜଣାଯାଏ ଯେ ପଞ୍ଚଦଶ ଶତାବ୍ଦୀର ଓଡ଼ିଶା ଏକ ଗଣତାନ୍ତ୍ରିକ ରାଷ୍ଟ୍ର ଥିଲା ଓ ସାରଳା ଦାସ ଥିଲେ ସମଗ୍ର ଭାରତବର୍ଷରେ ଗଣତନ୍ତ୍ରର ଆଦ୍ୟ ପ୍ରବର୍ତ୍ତକ । ଏକଥା କହିଲାବେଳେ ପଞ୍ଚଦଶ ଶତକରେ ଓଡ଼ିଆ ରାଜାଙ୍କର ଜନସାଧାରଣଙ୍କପ୍ରତି ଥିବା ଶ୍ରଦ୍ଧା ଓ ଜନସାଧାରଣଙ୍କର ରାଜାଙ୍କପ୍ରତି ଥିବା ସମ୍ମାନକୁ ସ୍ୱୀକାର କରିବାକୁ ହୁଏ । ସାରଳା ଦାସ ମହାଭାରତର ଶାନ୍ତି ପର୍ବରେ ମୁମୂର୍ଷୁ ଅବସ୍ଥାରେ ଥିବା ପିତାମହ ଭୀଷ୍ମ ମହାରାଜା ଯୁଧିଷ୍ଠିରଙ୍କୁ ରାଜ୍ୟ ଶାସନ ସମ୍ବନ୍ଧରେ ବହୁ ନୀତି-ଉପଦେଶ ଦେଇଛନ୍ତି । ତାହା ହେଉଛି-

‘ବେଳ କାଳ ଜାଣି ଧନ ପ୍ରଜାଙ୍କୁ ଯେ ଦେବୁ
ଅନ୍ଧାରି ବିଜେ ନକରି ବିଶ୍ୱାସ ନଯିବୁ ।
ପାରିଧିକି ଏକାବେଳେ ନତେଜିବୁ ରାଜା
ଦେବତା ବ୍ରାହ୍ମଣେ ନିତ୍ୟ କରୁଥିବୁ ପୂଜା ।
ଧାର୍ମିକଙ୍କୁ ଏକାଦଶୀ ବ୍ରତ କରାଇବୁ ।
ବିଦେଶୀ ଦୂତ କଟକେ ପ୍ରବେଶି ନଦେବୁ ।
ରାଜ୍ୟ ଭାର ସମର୍ପିବୁ ମନ୍ତ୍ରୀର ହସ୍ତରେ
ସମୁଦାୟ ଅଧିକାର ନଦେବୁ ତାହାରେ ।
କୃଷି କର୍ମକାରୀ ଜନେ ନ ଦଣ୍ଡିବୁ ଧନ
ଗୋଚର ନିମନ୍ତେ ଛାଡ଼ିଦେବୁ ବହୁ ସ୍ଥାନ ।
ତୀର୍ଥରେ ଲୋକମାନଙ୍କୁ ଦେବୁ ଅନ୍ନଦାନ
ଉତ୍ତମ ସ୍ଥାନେ ରଖିବୁ ସେନାପତି ଗଣ ।
ଗଜ ଅଶ୍ୱଙ୍କ ନିମନ୍ତେ ଦେଉଥିବୁ ଧନ
ଗୋପାଳେ ବିଶ୍ୱାସ କରି ଅର୍ପିବୁ ଗୋଧନ ।
ଗୁଣୀ ଗୁଣ ଜାଣି କରି କରୁଥିବୁ ପୂଜା
କବିମାନଙ୍କୁ କୃପଣ ନହୋଇବୁ ରାଜା ।’

ଏକ ପାର୍ଶ୍ୱରେ ସମଗ୍ର ଭାରତବର୍ଷରେ ମୁସଲମାନ ରାଜତ୍ୱର ଭୟାବହତା ଓ ଭାରତୀୟ ଜନତା ମଧ୍ୟରେ ପରାଧୀନତାର ଗ୍ଲାନି ଏବଂ ଅନ୍ୟପାର୍ଶ୍ୱରେ ଉତ୍କଳ ଭୂଖଣ୍ଡରେ ଗଣତାନ୍ତ୍ରିକ ସମାଜ ବ୍ୟବସ୍ଥାରେ ରାଜା ପ୍ରଜା ମଧ୍ୟରେ ଥିବା ସୁସଂପର୍କର ଚିନ୍ତନକୁ କବି ଭବିଷ୍ୟତ ପାଠକମାନଙ୍କ ଉଦ୍ଦେଶ୍ୟରେ ଉପସ୍ଥାପିତ କରିବା ସହିତ ସମଗ୍ର ଭାରତୀୟ ସାହିତ୍ୟରେ ସାରଳା ଦାସ ସାହିତ୍ୟର ମହନୀୟତା ପ୍ରତିପାଦନ କରିଛନ୍ତି ।

ଜଣେ ସଫଳ ଦ୍ରଷ୍ଟା ଭାବରେ ସାରଳା ଦାସଙ୍କ ଦୃଷ୍ଟି ଥିଲା ବହୁଧା ବିଭକ୍ତ । ସମାଜ ଚେତନା ସହିତ ଓଡ଼ିଶାର ଇତିହାସ ଓ ଭୂଗୋଳକୁ ପରିପୂର୍ଣ୍ଣ ରୂପଦେବାରେ ସେ ଥିଲେ ଆମ ସାହିତ୍ୟର ଜନକ । ତାଙ୍କ ରଚନାର ଦୀର୍ଘ ଚାରିଶତ ବର୍ଷ ବ୍ୟବଧାନ ପରେ ଊନବିଂଶ ଶତକର ଆଦ୍ୟପାଦରେ ଓଡ଼ିଶାର ଇତିହାସକୁ ନେଇ ପ୍ରଥମେ ଇଂରେଜମାନେ ସଂକ୍ଷିପ୍ତ ଓ ବିକ୍ଷିପ୍ତ ଗ୍ରନ୍ଥମାନ ରଚନା କରିଥିଲେ । ଓଡ଼ିଆମାନେ ସେ କାର୍ଯ୍ୟରେ ମନୋନିବେଶ କଲାବେଳକୁ ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧ ହୋଇ ସାରିଥିଲା । ମାତ୍ର ପଞ୍ଚଦଶ ଶତକବେଳକୁ ସାରଳା ଦାସ ସେ ଦିଗରେ ତାଙ୍କର ମହାଭାରତ ମଧ୍ୟରେ ଦୃଢ଼ ପଦକ୍ଷେପ ଗ୍ରହଣ କରିଥିଲେ । ତାଙ୍କ ସମୟର ଓଡ଼ିଶା କହିଲେ ଭାରତବର୍ଷର ଏକ ବିରାଟ ଭୂଖଣ୍ଡକୁ ବୁଝାଉଥିଲା । ସେ ଥିଲେ କପିଳେନ୍ଦ୍ର ଦେବଙ୍କ ସମକାଳୀନ ସ୍ରଷ୍ଟା । ସେହି କାଳରେ ଏକ ସ୍ୱାଧୀନ ରାଷ୍ଟ୍ର ଭାବରେ ଉତ୍କଳର ଭୌଗୋଳିକ ସୀମା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ମହାଭାରତରେ କୌରବ ପାଣ୍ଡବଙ୍କର ରାଜ୍ୟ ଜୟ, ଯୁଦ୍ଧାଭିଯାନ, ରାଜ୍ୟଗଠନ, ନୂତନ ରାଜ୍ୟ ଅନ୍ୱେଷଣ ଏବଂ ସମକାଳର ସମାଜ ବ୍ୟବସ୍ଥା ସହିତ ସାରଳା ଦାସ ସଚେତନ ଥିଲେ । ଚତୁର୍ଦ୍ଦଶ ଓ ପଞ୍ଚଦଶ ଶତକରେ ଭାରତର ଦକ୍ଷିଣ ଓ ଉତ୍ତରାଂଶରେ ମୁସଲମାନ ଶାସକମାନେ ରାଜ୍ୟ ଜୟ ନିମିତ୍ତ ବିଭିନ୍ନ ସ୍ଥାନକୁ ଯୁଦ୍ଧାଭିଯାନ କରୁଥିଲେ । ମହାଭାରତରେ ବର୍ଣ୍ଣିତ କୌରବ ପାଣ୍ଡବଙ୍କ ମଧ୍ୟରେ ହୋଇଥିବା ଯୁଦ୍ଧର ଘନଘଟା ମୁସଲମାନୀ ଶାସକଙ୍କ ଯୁଦ୍ଧାନୁରୂପ ଥିଲା । ପାଣ୍ଡବଙ୍କ ସହିତ ଘୋର ସମର କାଳରେ ଦୁର୍ଯ୍ୟୋଧନ ଓ ତାଙ୍କର ସୈନ୍ୟ ସାମନ୍ତ ପାଣ୍ଡବଙ୍କ ଅନ୍ୱେଷଣରେ ଭାରତବର୍ଷର ଦକ୍ଷିଣାଞ୍ଚଳକୁ ଗମନ କରିବା ପ୍ରସଙ୍ଗ ମହାଭାରତର ବିଭିନ୍ନ ପର୍ବରେ ଏକାଧିକବାର ବର୍ଣ୍ଣିତ ହୋଇଛି । ସେହି କଥାକୁ ସାରଳା ଦାସ ତାଙ୍କର ମହାଭାରତ ଗ୍ରନ୍ଥର ବିରାଟ ପର୍ବରେ ନିମ୍ନଭାବରେ ଉଲ୍ଲେଖ କରିଛନ୍ତି-

‘କନାଭଜ ଉଦେଗିରି ପୁଣି ଚନ୍ଦ୍ରଗିରି
କାଞ୍ଚି ଚନ୍ଦ୍ରପୁର ଥାଉ ଉତ୍ତମ କାବେରୀ ।
ଚୌରମଣ୍ଡଳ କୋଶଳ ମଣ୍ଡଳ ମଲ୍ଲିକା
ପାଣ୍ଡବନଗର କୃଷ୍ଣବେଣୀ ଷଡ଼ଙ୍ଗିକା ।
ଉଡ଼ଙ୍ଗମାତଙ୍ଗ ଭଦ୍ରା କୃଷ୍ଣା ସେ ସୁନନ୍ଦା
ଗୋପନ-ଭାଗୀ ବିଜୟା ଆବର ଆନନ୍ଦା ।
ଶରଭଙ୍ଗ ସୁନନ୍ଦିକ କନାଭଜ ଭୋଟ
ଖିନା ଗୋମତୀ କଜ୍ଜଳୀ ଆଦି ସର୍ବରାଷ୍ଟ୍ର ।
ନାଟ ଚୋଡ଼ଙ୍ଗ ଅବନ୍ତୀ ଆବର କାମାକ୍ଷୀ
ତରତର କୁଣ୍ଡାବେଦୀ ପୁଣି ମଙ୍ଗଳାକ୍ଷୀ ।’

ଏ ପ୍ରସଙ୍ଗରେ ଆମ ସାହିତ୍ୟର ବିଶିଷ୍ଟ ଐତିହାସିକ ସ୍ୱର୍ଗୀୟ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ତାଙ୍କର 'ସାରଳା ସାହିତ୍ୟର ଐତିହାସିକ ଚିତ୍ର' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି- 'ଏହା ହିଁ ନିଃସନ୍ଦେହ ପ୍ରମାଣିତ ହେଉଛି ଯେ କବି ମହାଭାରତ ଜରିଆରେ ସମସାମୟିକ ଇତିହାସକୁ ହିଁ ପ୍ରଚ୍ଛନ୍ନ ଭାବରେ ଲେଖିଯାଇଛନ୍ତି । ଏହା ସେ ସ୍ୱତଃପ୍ରବୃତ୍ତ ହୋଇ ଲେଖିଛନ୍ତି କିମ୍ବା କାହାରି ପ୍ରରୋଚନାରେ ଲେଖିଛନ୍ତି, କିମ୍ବା ଖାଲି କଳ୍ପନା ବଳରେ ଅନେକ କଥା ଲେଖିଲା ବେଳେ ଐତିହାସିକ ଘଟଣାମାନଙ୍କ ସାହାଯ୍ୟ ନେବାକୁ ବାଧ ହୋଇଛନ୍ତି । ମହାଭାରତର ଏହି ସଂଜ୍ଞା ଅନୁସାରେ ଅତି ଅତୀତ, ନିକଟ ଅତୀତ ଓ ସମସାମୟିକ ସମସ୍ତ ଇତିହାସ ମହାଭାରତର ଅନ୍ତର୍ଭୁକ୍ତ ହୋଇଯାଉଛି । ଅତଏବ ନିକଟ ଅତୀତ ବା ସମସାମୟିକ ଇତିହାସକୁ ମହାଭାରତରେ ସ୍ଥାନ ଦେବା ଦୋଷାବହ ନୁହେଁ, ମାତ୍ର ସମସ୍ତ ଇତିହାସକୁ ଚିରାଚରିତ ପୌରାଣିକ ରୀତିରେ ଓ ମୌଳିକ ମହାଭାରତର ନାୟକ ନାୟିକାଙ୍କ ଜରିଆରେ ହିଁ ପ୍ରକାଶ କରିବାର କଥା । ସାରଳା ଦାସ ତାହା ହିଁ କରିଛନ୍ତି । ସେ ଖାଲି ଓଡ଼ିଆ ସାହିତ୍ୟର ଜନ୍ମଦାତା ନୁହନ୍ତି- ଓଡ଼ିଶା ଇତିହାସର ମଧ ଜନ୍ମଦାତା ।' (ପୃ. ୨୯) ସୁତରାଂ ସାରଳା ଦାସଙ୍କ ମହାଭାରତ ମଧ୍ୟରେ ଇତିହାସର ସନ, ବାର ବା ତାରିଖ ଉଲ୍ଲେଖ ନଥିଲେ ମଧ ଆମେ ମହାଭାରତର ଚରିତ୍ରାୟନ ମଧ୍ୟରେ ଇତିହାସର ସ୍ୱରୂପ ସହିତ ତାଙ୍କ ସାହିତ୍ୟରେ ସମକାଳରେ ଭାରତର ବିଭିନ୍ନ ସ୍ଥାନରେ ସଂଘଟିତ ଯୁଦ୍ଧର ସୂଚନା ଆମେ ପାଇଥାଉଁ ।

ସାରଳା ମହାଭାରତ ମଧ୍ୟରେ ବହୁ ଲୋକକଥା, କିମ୍ବଦନ୍ତୀ ଏବଂ ଆଖ୍ୟାୟିକାର ବର୍ଣ୍ଣନା ରହିଛି । ଏସବୁ ବର୍ଣ୍ଣନା ସମକାଳୀନ ଜନତାଙ୍କ ନିମିତ୍ତ ଶିକ୍ଷାପ୍ରଦ । ମହାଭାରତରେ ବର୍ଣ୍ଣିତ ଏହିପରି ଆଖ୍ୟାୟିକା ହେଉଛି ପ୍ରୌଢ଼ାସୁରର ବରଲାଭ (ମଧ୍ୟପର୍ବ) ବା ପ୍ରୌଢ଼ାସୁରର ଦିଗ୍‌ବିଜୟ (ମଧ୍ୟପର୍ବ) । ମୂଳ ସଂସ୍କୃତ ମହାଭାରତରେ ଏସବୁ ଆଖ୍ୟାୟିକାର ବର୍ଣ୍ଣନା ନଥିବାବେଳେ ସାରଳା ଦାସଙ୍କର ଏହା ହେଉଛି ନିଜସ୍ୱ ମୌଳିକ ସୃଷ୍ଟି । ମହାଭାରତର ଏହି ଅଂଶ ଅଧ୍ୟୟନ କାଳରେ ଆମ ମନରେ ସ୍ୱତଃ ପ୍ରଶ୍ନ ଆସେ, ଏହି ପ୍ରୌଢ଼ାସୁର କିଏ ? କବି ସାରଳା ଦାସଙ୍କ ଚେତନାରେ ପ୍ରୌଢ଼ାସୁର ହେଉଛନ୍ତି ଦକ୍ଷିଣର ମଲ୍ଲିକାର୍ଜ୍ଜୁନଙ୍କ ପିତା ଦେବରାୟ । ପୁଣି ସାରଳା ଦାସଙ୍କ ବର୍ଣ୍ଣିତ କରବୀରପୁରର ରାଜା ପୁଣ୍ଡରୀକ ହେଉଛନ୍ତି ରାଜା ମଲ୍ଲିକାର୍ଜ୍ଜୁନ । ମହାଭାରତର ମଧ୍ୟପର୍ବ ଓ ସଭାପର୍ବରେ ବର୍ଣ୍ଣିତ ଏହି ପୁରାଣ ଚରିତ୍ରଙ୍କ ପଶ୍ଚାଦ୍‌ଭାଗରେ ସାରଳା ଦାସ ଇତିହାସର ପଦଧ୍ୱନି ସୃଷ୍ଟି କରିଛନ୍ତି । ବିଶେଷ କରି ମୂଳ ମହାଭାରତରେ ଏସବୁ କିମ୍ବଦନ୍ତୀ ବା ଇତିହାସର କଥା ନଥିବାବେଳେ ସାରଳା ଦାସଙ୍କ ମହାଭାରତର ବିଭିନ୍ନ ଚରଣରେ ବର୍ଣ୍ଣିତ 'କରବୀର', 'ମୋଦାଗିରି', 'ପୁଣ୍ଡରୀକ', 'ବାସୁଦେବ', 'କର୍ଣ୍ଣାଟଦେଶ' ପ୍ରଭୃତି ବର୍ଣ୍ଣନା ମଧ୍ୟରେ ସ୍ରଷ୍ଟା, ଇତିହାସ ପ୍ରତି କେତେ ସଚେତନ ଥିଲେ ତାହା ସହଜରେ ଅନୁମିତ ହୁଏ । ମହାଭାରତ ମଧ୍ୟରେ ସାରଳା ଦାସ ଇତିହାସ ଅନୁଯାୟୀ ମଲ୍ଲିକାର୍ଜ୍ଜୁନଙ୍କୁ ବିଜୟନଗର ରାଜ୍ୟର ମହାରାଜା ରୂପେ ଓ ତାହାଙ୍କୁ ପୌରାଣିକ ରୀତିରେ ପୁଣ୍ଡିରୀକ ବାସୁଦେବ ରୂପେ ବର୍ଣ୍ଣନା କଲାବେଳେ ନିଜ ଦିବ୍ୟ ଦୃଷ୍ଟିକୁ ପ୍ରସାରିତ କରିଛନ୍ତି ।

ସାରଳା ମହାଭାରତରେ ବର୍ଣ୍ଣିତ ଅନେକ କାହାଣୀ ଓ କିମ୍ବଦନ୍ତୀ ସହିତ ଇତିହାସର ସଂପର୍କ ଅତ୍ୟନ୍ତ ନିବିଡ଼ । ଅନେକ ସମୟରେ ସ୍ରଷ୍ଟା ଓଡ଼ିଶାର ଅସ୍ପଷ୍ଟ ଓ ଅଲିଖିତ ଇତିହାସ ମଧ୍ୟରୁ କାହାଣୀର ସୂତ୍ରଟିକୁ ଉଦ୍‌ଘାଟନ କରି ସେହି ସୂତ୍ର ମାଧ୍ୟମରେ ଇତିହାସର ସତ୍ୟକୁ ପ୍ରକଟିତ କରିଛନ୍ତି । ସ୍ରଷ୍ଟାଙ୍କର ଏହିପରି ଏକ କାହାଣୀ ହେଉଛି 'ସୁରେଖା ହରଣ' ପ୍ରସଙ୍ଗ । ଏହି ପ୍ରସଙ୍ଗ ସହିତ ପ୍ରତ୍ୟକ୍ଷରେ ବା ପରୋକ୍ଷରେ ହେଉ, ସାରଳା ଦାସ ଉତ୍କଳର କିମ୍ବଦନ୍ତୀ ସହିତ ଇତିହାସକୁ ଏକାକାର କରି ଦେଇଛନ୍ତି । ଓଡ଼ିଶାରେ କାଞ୍ଚି-କାବେରୀ କିମ୍ବଦନ୍ତୀ ଖୁବ୍ ଜନପ୍ରିୟ । ଏହା ସହିତ ସାରଳା ମହାଭାରତର ମଧ୍ୟପର୍ବରେ ବର୍ଣ୍ଣିତ 'ସୁରେଖା ହରଣ' କାହାଣୀଟି ସାମ୍ୟ ରକ୍ଷା କରିଛି ।

କରମଣ୍ଡଳ ରାଜ୍ୟର ନରେନ୍ଦ୍ର କୃତଶେଖର । ତାଙ୍କ କନ୍ୟା ସୁରେଖା । ସୁରେଖା ଯୌବନରେ ପଦାର୍ପଣ କରିବାରୁ ରାଜା କୃତଶେଖର ତାହାଙ୍କୁ ଗୋଟିଏ ମେଢ଼ ତୋଳାଇ ତହିଁରେ ରଖାଇଥିଲେ । ନାରଦଙ୍କ ଯୋଗୁଁ ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନଙ୍କ ସହିତ ସୁରେଖାଙ୍କର ସେହି ମେଢ଼ ଭିତରେ ମିଳନ ଘଟିଥିଲା । ମିଳନ ପରେ ପରେ ଉଭୟେ ଦ୍ୱାରକା ଗମନ କାଳରେ କୃତଶେଖର କନ୍ୟା ଅପହରଣର ସମ୍ବାଦ ପାଇ ପ୍ରଦ୍ୟୁମ୍ନଙ୍କୁ ବନ୍ଦୀ କରିଥିଲେ । ମାତ୍ର ପ୍ରଦ୍ୟୁମ୍ନଙ୍କ ବନ୍ଦୀ ହେବା ଖବର ଶୁଣି ଉଭୟ କୃଷ୍ଣ ଓ ବଳରାମ ସସୈନ୍ୟେ କରମଣ୍ଡଳ ରାଜ୍ୟରେ ପ୍ରବେଶ କରି କୃତଶେଖରଙ୍କ ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଥିଲେ । ମାତ୍ର ନୀଳଶେଖରଙ୍କ ଅନୁରୋଧକ୍ରମେ ପ୍ରଦ୍ୟୁମ୍ନ ବନ୍ଧନମୁକ୍ତ ହେଲେ ଓ ସୁରେଖାଙ୍କୁ ବିବାହ କଲେ । ସାରଳା ମହାଭାରତର ଏହି ମୂଳ ଗଳ୍ପ ସହିତ ଓଡ଼ିଶାର ଖୁବ୍ ଜନପ୍ରିୟ କାଞ୍ଚି-କାବେରୀ କାହାଣୀଟି ଖୁବ୍ ସାମ୍ୟ ରକ୍ଷା କରିଥାଏ । କାଞ୍ଚି-କାବେରୀ କାହାଣୀର ଐତିହାସିକତା ଇତିହାସବିତ୍‌ଙ୍କଦ୍ୱାରା ଏଯାବତ୍ ଗୃହୀତ ହୋଇନଥିବା ବେଳେ ଐତିହାସିକମାନେ ମୋଟ ଉପରେ ଉତ୍କଳର ନରପତି ପୁରୁଷୋତ୍ତମ

ଦେବଙ୍କ କାଞ୍ଚି ଅଭିଯାନ ଓ ସେଠାରେ କାଞ୍ଚି ନରପତି ସାଲୁକ ନରସିଂହ ଦେବଙ୍କୁ ପରାସ୍ତ କରି ତାଙ୍କର କନ୍ୟା ପଦ୍ମାବତୀଙ୍କୁ ବିବାହ କରିବା ଘଟଣାକୁ ସ୍ୱୀକୃତି ଦେଇଛନ୍ତି । ସାରଳାଙ୍କ 'ସୁରେଖା ହରଣ' ପ୍ରସଙ୍ଗ କାଞ୍ଚି-କାବେରୀ କାହାଣୀ ସହିତ ସାମ୍ୟ ରକ୍ଷା କରୁଥିବା ବେଳେ ସାରଳା ମହାଭାରତର 'ସୁରେଖା ଚରିତ୍ର କାଞ୍ଚି-କାବେରୀ' କାହାଣୀର 'ପଦ୍ମାବତୀ' ଭିନ୍ନ ଅନ୍ୟ କେହି ନୁହନ୍ତି ବୋଲି ବିନା ଦ୍ୱିଧାରେ ଗ୍ରହଣ କରାଯାଇପାରେ ।

ଐତିହାସକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ତାଙ୍କର 'History of Orissa' ଗ୍ରନ୍ଥରେ ସାରଳା ଦାସଙ୍କ ସଂପର୍କରେ ଉଲ୍ଲେଖ କରିଛନ୍ତି- 'A love for Orissa and for its language and literature become the order of Kapilendra's reign and inspired by this new idealism Sarala Das, a sudra by caste created the first and the vast Oriya literature which, in its quality, contents and bulk, is still considered to be the greatest single Oriya literature. Thus during the rule of Kapilendra a new age of renaissance, started in Orissa.' (Vol.I, p.206) ଏହି ରେନାସାଁ ମହାଭାରତ ଗ୍ରନ୍ଥରେ ବର୍ଣ୍ଣିତ ବେଲାଳସେନ ବଧ, ଦୁର୍ଯ୍ୟୋଧନଙ୍କ ରକ୍ତନଦୀ ସନ୍ତରଣ, ଦୁର୍ଭିକ୍ଷ ପ୍ରସଙ୍ଗ, ଭୀଷ୍ମ ଚରିତ, ଗାଲମାଧବ ପ୍ରଭୃତି ପ୍ରସଙ୍ଗ ମଧ୍ୟରେ ଆମେ ଲକ୍ଷ୍ୟ କରିଥାଉଁ । ସ୍ରଷ୍ଟାଙ୍କର ଜଗନ୍ନାଥଙ୍କ ବନ୍ଦନା ଓ ଏହି ସଂପର୍କିତ ବର୍ଣ୍ଣନା ମଧ୍ୟରେ ଆର୍ଯ୍ୟ ଓ ଅନାର୍ଯ୍ୟ ସଂସ୍କୃତିର ପ୍ରତିଫଳନ ଅନୁଭବ କରିହୁଏ । ମହାଭାରତରେ ବର୍ଣ୍ଣିତ ଶ୍ରୀକୃଷ୍ଣ ଓ ଜଗନ୍ନାଥଙ୍କ ସଂପର୍କ, ବିଶ୍ୱାବସୁ ଓ ଜାରାଶବର ଉପାଖ୍ୟାନ ମଧ୍ୟରେ ସମଗ୍ର ଭାରତୀୟ ସାହିତ୍ୟରେ ସାରଳା ଦାସ ହିଁ ପ୍ରଥମେ ଜାତୀୟ ସଂହତିର ଓଁକାର ଧ୍ୱନି ସୃଷ୍ଟି କରିଛନ୍ତି । 'ମହାଭାରତ' ବା 'ଚଣ୍ଡୀପୁରାଣ' ମୁଖ୍ୟତଃ ଯୁଦ୍ଧ ବର୍ଣ୍ଣିତ କାହାଣୀ ଉପରେ ପ୍ରତିଷ୍ଠିତ ହୋଇଥିଲେ ହେଁ ସାରଳା ଦାସ ସେହି ଯୁଦ୍ଧ ବର୍ଣ୍ଣନା ମଧ୍ୟରେ ତାଙ୍କ ସାହିତ୍ୟର ପ୍ରତ୍ୟେକ ପୃଷ୍ଠାରେ ଶାନ୍ତି ଓ ସଂହତିର ବାର୍ତ୍ତା ପ୍ରଚାର କରିଛନ୍ତି । ସବୁଧର୍ମର ବର୍ଣ୍ଣନା କରିଥିଲେ ହେଁ ସ୍ରଷ୍ଟା ଲୋକଧର୍ମ ଉପରେ ଗୁରୁତ୍ୱ ଆରୋପ କରି ସମଗ୍ର ମାନବ ସମାଜକୁ ସେହି ଧର୍ମରେ ଦୀକ୍ଷିତ ହେବାକୁ ଆହ୍ୱାନ ଦେଇଛନ୍ତି ।

'ମହାଭାରତ' ବା 'ଚଣ୍ଡୀପୁରାଣ' ମୁଖ୍ୟତଃ ଯୁଦ୍ଧ ବର୍ଣ୍ଣିତ କାହାଣୀ ଉପରେ ପ୍ରତିଷ୍ଠିତ ହୋଇଥିଲେ ହେଁ ସାରଳା ଦାସ ସେହି ଯୁଦ୍ଧ ବର୍ଣ୍ଣନା ମଧ୍ୟରେ ତାଙ୍କ ସାହିତ୍ୟର ପ୍ରତ୍ୟେକ ପୃଷ୍ଠାରେ ଶାନ୍ତି ଓ ସଂହତିର ବାର୍ତ୍ତା ପ୍ରଚାର କରିଛନ୍ତି ।

ସାରଳା ଦାସଙ୍କ ମହାଭାରତର ସ୍ୱରୂପ ଉଲ୍ଲେଖ ପରିପ୍ରେକ୍ଷୀରେ ଆଉ ଏକ କଥା ଆମ ମନକୁ ସ୍ୱତଃ ଆସିଥାଏ । ତାହା ହେଉଛି ସମାଜରେ ଉଚ୍ଚନୀଚ ମଧ୍ୟରେ ଥିବା ଭେଦଭାବ । ଜାତି ଅଜାତି, ଉଚ୍ଚନୀଚ ମଧ୍ୟରେ ଥିବା ଭେଦାଭେଦ ଦୃଷ୍ଟିରୁ ସ୍ରଷ୍ଟା ଥିଲେ ବହୁ ଉର୍ଦ୍ଧ୍ୱରେ । ତାଙ୍କ ସାହିତ୍ୟରେ ଜାତି ଅଜାତି ମଧ୍ୟରେ ସେ ଆଦୌ ପାର୍ଥକ୍ୟ ଦେଖୁ ନଥିଲେ । ପୂର୍ବରୁ ପୁରାଣ ପାଠ ବା ପୁରାଣ ରଚନା ବ୍ରାହ୍ମଣମାନଙ୍କର ଏକଚ୍ଛତ୍ର ଅଧିକାର ହୋଇଥିବାବେଳେ ଆମ ଭାଷା ସାହିତ୍ୟରେ ପ୍ରଥମେ ସାରଳା ଦାସ ହିଁ ସେହି ପରମ୍ପରା ଓ ପ୍ରଥା ବିରୁଦ୍ଧରେ ଯାଇ ରାମାୟଣ, ମହାଭାରତ, ଚଣ୍ଡୀପୁରାଣ ପ୍ରଭୃତି ଗ୍ରନ୍ଥ ସାଧାରଣ ଜନତାଙ୍କ ଉଦ୍ଦେଶ୍ୟରେ ରଚନା କରିଥିଲେ । ବାଳୁତ ଭୀମ ରୋଷଶାଳାରେ ଲୁଚି ଲୁଚି ଅଗ୍ନିଦେବଙ୍କ ନିମିତ୍ତ ପ୍ରସ୍ତୁତ ରାନ୍ଧଣାକୁ ଖାଇଦେବା ଏବଂ ଏହି ପାପ ଯୋଗୁଁ ପଣ୍ଡୁ ଭୀମଙ୍କୁ ହାଣିଦେବାକୁ ପ୍ରତିଜ୍ଞାବଦ୍ଧ ହେବା କବି ସାରଳା ଦାସଙ୍କୁ ଠିକ୍ ମନେ ହୋଇ ନାହିଁ । ତେଣୁ ସେ ଅଗ୍ନି ଦେବଙ୍କ ମୁଖରେ 'ପିତୃଦେବଙ୍କର ଆଶା ପୁତ୍ର ଉଚ୍ଛିଷ୍ଟକୁ' କହିବା ମଧ୍ୟରେ ଦେବତାଙ୍କ ମଧ୍ୟରେ ମାନବତ୍ୱ ପ୍ରତିଷ୍ଠା କରିବା ସହିତ ସ୍ରଷ୍ଟା ମାନବ ଓ ଦେବତା ମଧ୍ୟରେ କୌଣସି ପାର୍ଥକ୍ୟ ଦେଖିନାହାନ୍ତି । ବରଂ ସେ 'ମହାଭାରତ' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି-

'ଗର୍ଭଠାରୁ ଉପରକୁ ତାଳୁ ବ୍ରହ୍ମଯାକେ
ଭୋଗ କରନ୍ତି ତେତିଶ କୋଟି ଦେବ ଲୋକେ ।'

ମହାଭାରତ ମହାଭାରତୀୟ ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଥିଲେ ହେଁ ବାସ୍ତବତା ଦୃଷ୍ଟିରୁ ଏହା ଉତ୍କଳୀୟ ଚିନ୍ତାଚେତନାରେ ପରିପୂର୍ଣ୍ଣ ଥିଲା । ମାତୃଭୂମି ଓ ମାତୃଭାଷା ନିମିତ୍ତ ଗଭୀର ମମତ୍ୱବୋଧ ହିଁ ତାଙ୍କ ଗ୍ରନ୍ଥର ପ୍ରତ୍ୟେକ ପୃଷ୍ଠା ମଧ୍ୟରେ ପ୍ରତିଧ୍ୱନିତ ହେଉଥିଲା । ଉତ୍କଳର ଜାତୀୟ ଦେବତା ଜଗନ୍ନାଥ । ସେ ହେଉଛନ୍ତି ଓଡ଼ିଆ ଜାତିର ଆତ୍ମାର ପ୍ରତୀକ, ପତିତପାବନ । ସମଗ୍ର ବିଶ୍ୱମାନବର ସେ ପୁଣି ସୁଖ ଦୁଃଖର ସାଥୀ । ପୁଣି ଝଙ୍କଡ଼ବାସିନୀ ଦେବୀ ଶାରଳା ହେଉଛନ୍ତି ଉତ୍କଳର ବାଗ୍‌ଦେବୀ । ସୁତରାଂ କବି ସାରଳା ଦାସ ତାଙ୍କ ମହାଭାରତ ଗ୍ରନ୍ଥର ଆଦିପର୍ବରେ 'ଶାରଳା ଦେବୀଙ୍କ ବନ୍ଦନା' ମଧ୍ୟରେ କବି ପ୍ରଥମେ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ

'ଶ୍ରୀ ଯମେଶ୍ୱର ମହାଲିଙ୍ଗ ମଉଦଧିର ଉତ୍ତର ତଟେ
ନୀଳ ସୁନ୍ଦର ପର୍ବତ ନୀଳ କଳ୍ପବଟେ ।

ବିଜୟେ ରାମକୃଷ୍ଣ ସୁଭଦ୍ରା ନାମେ ବ୍ରହ୍ମ
ଚାରିଶତ ବତିଶ ସହସ୍ର ବରଷକୁ ଯୋଗଲୟେ ମହାତମା ।'

ଆଦି ଉଲ୍ଲେଖ କରିବା ପରେ ନିମ୍ନଭାବରେ ଉତ୍କଳର ବାଗ୍‌ଦେବୀ ଶାରଳାଙ୍କର ବନ୍ଦନା କରିଛନ୍ତି ।

'ତହିଁର ସନ୍ନିଧେ ସାରୋଳ ନାମେ ଗ୍ରାମେ
ବିଜେ ମାହେଶ୍ୱରୀ ସାରୋଳ ଚଣ୍ଡୀ ନାମେ ।
ମହାଯୋଗେଶ୍ୱରୀ ସେ ପରମ ବଇଷ୍ଣବୀ
ପ୍ରତ୍ୟକ୍ଷେ ବର ଦିଅଇ ସେ ପରମ ସାଧବୀ ।'

ପୁଣି ସାରଳା ଦାସ ମହାଭାରତର ବିଭିନ୍ନ ଚରିତ୍ର ଚିତ୍ରଣ କାଳରେ ସେହି ଚରିତ୍ରମାନଙ୍କୁ ଭାରତବର୍ଷର ନାନା ସ୍ଥାନ ଭ୍ରମଣ ଓ ସେସବୁ ସ୍ଥାନ ସହିତ ସଂପୃକ୍ତ କରିବା ଅବସରରେ ଉତ୍କଳକୁ ସର୍ବାପେକ୍ଷା ଅଧିକ ଗୁରୁତ୍ୱ ଦେଇଛନ୍ତି । ମହାଭାରତରେ ବର୍ଣ୍ଣିତ ଶିବ ବୃଷଭ ଉପରେ ବସି ବିଶ୍ୱ ଭ୍ରମଣ କରିବା ଅବକାଶରେ ଯାଜପୁରର ବୈତରଣୀ ନଦୀକୂଳରେ ଯାତ୍ରା କରିବା କାଳରେ ବୃଷଭ ସାହାଡ଼ା ବୃକ୍ଷରୁ ପତ୍ର ଆଣି କାନରେ ଦେବା କଥାକୁ ସାରଳା ଦାସ 'ସାହାଡ଼ା ପତ୍ର ମାହାତ୍ମ୍ୟ' ପ୍ରସଙ୍ଗ ମଧ୍ୟରେ ବର୍ଣ୍ଣନା କରିଛନ୍ତି । ପୁନଶ୍ଚ ସ୍ରଷ୍ଟା ତାଙ୍କର ସ୍ୱର୍ଗାରୋହଣ ପର୍ବରେ ପାଣ୍ଡବମାନଙ୍କୁ ନାନା ତୀର୍ଥ ଭ୍ରମଣ କରାଇ ଶେଷରେ ନୀଳାଚଳ ଧାମ ସହିତ ମହେନ୍ଦ୍ର, ମେଘାସନ, ବୈତରଣୀ ପ୍ରଭୃତି ଓଡ଼ିଶାର ବିଭିନ୍ନ ତୀର୍ଥ ବୁଲାଇ ଉତ୍କଳୀୟ ପ୍ରୀତିକୁ ବହୁଗୁଣିତ କରିଛନ୍ତି ।

ଏସବୁ ଦୃଷ୍ଟିରୁ ମନେହୁଏ ସାରଳା ଦାସ ଥିଲେ ଆମ ସାହିତ୍ୟର ପିତାମହ ଭୀଷ୍ମ ଓ ଉତ୍କଳୀୟ ରେନାସାଁ ଯୁଗର ପ୍ରଥମ ସ୍ରଷ୍ଟା । ତାଙ୍କର ବିପୁଳ ସୃଷ୍ଟି ମଧ୍ୟରେ ସେ କେବଳ ଓଡ଼ିଆ ଭାଷା ସାହିତ୍ୟକୁ ପ୍ରତିଷ୍ଠା ଦେଇନାହାନ୍ତି, ତାହା ସହିତ ସମଗ୍ର ଭାରତବର୍ଷରେ ଓଡ଼ିଆ ଜାତି ଓ ଜାତୀୟତାର ଭିତ୍ତିକୁ ଦୃଢ଼ କରି ତାହାରି ଉପରେ ଆମ ସଂସ୍କୃତି ଓ ସଭ୍ୟତାର ହର୍ମ୍ୟକୁ ପଲ୍ଲବିତ କରିଛନ୍ତି । ଫଳତଃ ଅମା ଅନ୍ଧକାର ମଧ୍ୟରୁ ଏ ଜାତି ଆଲୋକ ଦିଗରେ ଅଗ୍ରସର ହୋଇଛି ଓ ବିଶ୍ୱଦରବାରରେ ନିଜ ଆସନକୁ ଦୃଢ଼ କରିପାରିଛି ।

ସଂପାଦକ, ସାରଳା ସାହିତ୍ୟ ସଂସଦ
୧୫୦୧, ମହାନଦୀ ବିହାର
କଟକ-୭୫୩୦୦୪




ପୁରୀରେ ପଞ୍ଚଦଶ ଶ୍ରୀକ୍ଷେତ୍ର ପୁସ୍ତକ ମେଳାରେ ଅଭିନନ୍ଦନିକା ପକ୍ଷରୁ ବିଶିଷ୍ଟ ଅଭିନେତା ଶ୍ରୀ ରାମଚନ୍ଦ୍ର ପ୍ରତିହାରୀଙ୍କୁ ସମ୍ମାନିତ କରାଯାଉଛି । ଉତ୍କଳ ପ୍ରସଙ୍ଗର ମୁଖ୍ୟ ସଂପାଦକଙ୍କ ସମେତ ପୁରୀ ଜିଲ୍ଲା ପରିଷଦ ଅଧ୍ୟକ୍ଷ ଶ୍ରୀ ଶଙ୍କର ପରିଡ଼ା, ସମାଜସେବୀ ଶ୍ରୀ କୁମାର ହାଲଦାର ଓ ଅଭିନନ୍ଦନିକାର ସଂପାଦକ ଶ୍ରୀ ଶ୍ୟାମପ୍ରକାଶ ସେନାପତି ଉପସ୍ଥିତ ଅଛନ୍ତି । ୯.୦୧.୦୯

# ଭାରତର ଅଦ୍ୱିତୀୟ ନେତା ସୁଭାଷ ବୋଷ

ଗୁରୁକଲ୍ୟାଣ ମହାପାତ୍ର

'ମୋତେ ରକ୍ତ ଦିଅ, ମୁଁ ସ୍ୱାଧୀନତା ଆଣି ଦେବି' କିମ୍ବା 'ଦିଲ୍ଲୀ ଚଲୋ' ପରି ଅତି ନିବିଡ଼, ରୋମାଞ୍ଚକର ଓ ଦୃପ୍ତ ଆହ୍ୱାନ ଯାହାକି ନେତାଜୀ ସୁଭାଷ ଚନ୍ଦ୍ର ବୋଷ ପ୍ରାକ୍ ସ୍ୱାଧୀନତା କାଳରେ ପ୍ରତ୍ୟେକ ଭାରତୀୟଙ୍କ ଉଦ୍ଦେଶ୍ୟରେ ଦେଇଥିଲେ, ତାହାର ଧ୍ୱନି ଏବେ ବି ଆମମାନଙ୍କ ଭିତରେ ଅନୁରଣିତ ହୋଇ ପ୍ରଶ୍ନ କରୁଛି - 'ବିନା ରକ୍ତପାତରେ କ'ଣ ମୂଲ୍ୟ ସତ ଏ ସ୍ୱାଧୀନତାର ?' ନେତାଜୀଙ୍କ ଉଦ୍ଦେଶ୍ୟରେ ବା ବାପୁଜୀଙ୍କ ଉଦ୍ଦେଶ୍ୟରେ ସେମାନଙ୍କ ଜୟନ୍ତୀରେ ହୁଏ ତ ପ୍ରତ୍ୟେକ ଭାରତୀୟ ସେମାନଙ୍କୁ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଯାଉଛନ୍ତି । ମାତ୍ର ଏ ଦୁଇ ବରପୁତ୍ରଙ୍କ ନୀତି ଓ ଆଦର୍ଶଠାରୁ ସ୍ୱାଧୀନ ଭାରତରେ ଆମେମାନେ ସତେ ଯେପରି ଦୂରେଇ ଯାଇଛୁଁ ।



ଆମେ ସଭ୍ୟ, ଶିକ୍ଷିତ ଓ ସ୍ୱାଧୀନ ହୋଇଛୁଁ ବୋଲି ଗର୍ବ କରି ଚାଲିଛୁଁ । ଗୋରା ଶାସକଙ୍କ ପରିବର୍ତ୍ତେ, ଆମେ ନିଜକୁ ନିଜେ ଶାସନ କରୁଛୁଁ । ମାତ୍ର ଅବସ୍ଥା ଆମର ସୁଧୁରି ନାହିଁ । ରାଜନୀତିକ କ୍ଷୁଧା ମେଣ୍ଟାଇବାକୁ ସ୍ୱାଧୀନ ଭାରତରେ କେତେକ ହୁଏତ ବିଭିନ୍ନ ସଂପ୍ରଦାୟ ମଧ୍ୟରେ ଦଂଗା ହଙ୍ଗାମ ସୃଷ୍ଟି କରି ଚାଲିଛନ୍ତି । ସ୍ୱାଧୀନ ଭାରତରେ ଦଳିତ, ନିଷ୍ପେସିତ ଓ ଅବହେଳିତ ଲୋକଙ୍କୁ ସଂରକ୍ଷଣ ନାମରେ ନିଯୁକ୍ତି ଓ ଉଚ୍ଚଶିକ୍ଷା କ୍ଷେତ୍ରରେ ପ୍ରଭୂତ ସୁବିଧା ସୁଯୋଗ ସୃଷ୍ଟି କରାଯାଇଛି । କିନ୍ତୁ ଆର୍ଥିକ ମାନଦଣ୍ଡ କାରଣରୁ ଏହି ସଂରକ୍ଷଣର ସୁବିଧା ସୁଯୋଗ ଦିଆଯାଇ ପାରିନାହିଁ । ତେଣୁ ଉଚ୍ଚଶିକ୍ଷା ଅତ୍ୟନ୍ତ ବ୍ୟୟବହୁଳ ହୋଇଯାଇଛି । ଯେଉଁମାନେ ଏ ଦେଶ ପାଇଁ ପ୍ରାଣବଳି ଦେଲେ କିମ୍ବା ଲହୁ ଓ ଲୁହ ଢାଳିଦେଲେ, ସେହି ଶହୀଦ ବା ସଂଗ୍ରାମୀ ପରିବାରର ପିଲାମାନେ ନିଯୁକ୍ତି ଓ ଉଚ୍ଚଶିକ୍ଷା ପ୍ରାପ୍ତିରୁ ସ୍ୱାଧୀନ ଭାରତରେ ମଧ୍ୟ ବଞ୍ଚିତ ହୋଇଛନ୍ତି ।

ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନ ପ୍ରଭାବରୁ ହେଉ କି ନେତାଜୀଙ୍କ ଆଜାଦ୍ ହିନ୍ଦ୍ ଫଉଜ ଗଠନ କାରଣରୁ ହେଉ, ବ୍ରିଟିଶ ଶାସକ ଏ ଦେଶ ଛାଡ଼ି ଚାଲିଯିବା ପରେ ସ୍ୱାଧୀନ ଭାରତର ଏ ଅବସ୍ଥା ଦେଖି ହୁଏ ତ କ୍ଷୋଭ କରୁଥିବେ । ସେମାନେ ଯେଉଁସବୁ ଜଟିଳ ଆଇନ କାନୁନ୍‌ର ବ୍ୟାଖ୍ୟା କରିଗଲେ, ଆମେ ଭାରତୀୟମାନେ ତାକୁ ଅନୁସରଣ କରିଚାଲିଛୁଁ । ଫଳ କିନ୍ତୁ ମିଳିପାରୁ ନାହିଁ ।

ଓଡ଼ିଶା ସବୁଠୁଁ ଦରିଦ୍ର ରାଜ୍ୟ ବୋଲି ଗାନ୍ଧିଜୀ ଯାହା କହିଥିଲେ, ସେହି କଥାର ଗୁରୁତ୍ୱକୁ ଅନୁଭବ କରି ଆମେ ସମସ୍ତେ ଓଡ଼ିଶାକୁ ଉପରକୁ ଉଠାଇବାକୁ ଉଦ୍ୟମ କରିବା ଉଚିତ । ସୁଭାଷ ବୋଷ ଓଡ଼ିଶାରେ ଜନ୍ମଗ୍ରହଣ କରି ଓଡ଼ିଶାର ଉନ୍ନତି ପାଇଁ ବହୁ ଜନହିତକର କାମ କରିଥିଲେ । ମାତ୍ର ଆମେ ଭୁଲି ଗଲୁଁ ତାଙ୍କର ନୀତି ଓ ଆଦର୍ଶକୁ ।

କବି ଜୟଦେବ ଓଡ଼ିଶାର କେନ୍ଦୁଲିରେ ଜନ୍ମ ହୋଇଥିଲେ ମଧ୍ୟ ସେ ବଙ୍ଗଳାରେ ଅର୍ଥାତ୍ ପଶ୍ଚିମବଙ୍ଗରେ ଜନ୍ମ ହୋଇଥିଲେ ବୋଲି ଯେଉଁମାନେ କହି ବୋଲୁ ଥିଲେ ଏକଦା, ସେମାନେ କେଉଁଠି ସବୁ ହଜି ଗଲେଣି । ନବେ ଦଶକରେ ଏ ଲେଖକ କଟକରେ ଥିବାବେଳେ, ଦୁଇଜଣ ବାହାରର ବଙ୍ଗାଳୀଙ୍କ କଥୋପକଥନକୁ ଲକ୍ଷ୍ୟ କରି ଦୁଃଖିତ ହୋଇଥିଲା । ସେମାନଙ୍କ ମତ ଥିଲା କଟକର ଏସ୍.ସି.ବି. ମେଡ଼ିକାଲ କଲେଜଟି ସୁଭାଷ ଚନ୍ଦ୍ର ବୋଷ ମେଡ଼ିକାଲ କଲେଜ ହୋଇଥିବ । କାରଣ ସେତେବେଳେ ତାହାର ପ୍ରବେଶ ଦ୍ୱାରରେ କେବଳ 'ଏସ୍.ସି.ବି. ମେଡ଼ିକାଲ କଲେଜ' ବୋଲି ଏକ ଲମ୍ବା ନାମ ଫଳକ ରହିଥିଲା । ଏ ସଂକ୍ରାନ୍ତରେ ଏକ ସମ୍ବାଦ ପ୍ରକାଶ ପାଇବାରୁ ତତ୍କାଳୀନ କଟକର ଜଣେ ସ୍ୱାସ୍ଥ୍ୟ ମନ୍ତ୍ରୀ ତାହାର ନାମ ଫଳକକୁ ବଦଳାଇ ଶ୍ରୀରାମଚନ୍ଦ୍ର ଭଂଜ ମେଡ଼ିକାଲ କଲେଜ ବୋଲି ଲେଖାଇ ଥିଲେ ।

ଏ କଥା ସତ ଯେ ମହାତ୍ମା ଗାନ୍ଧୀ ଅହିଂସା ନୀତିରେ ଯେପରି ଅସହଯୋଗ ଆନ୍ଦୋଳନ କରିଗଲେ, ତତ୍କାଳୀନ ବ୍ରିଟିଶ ସରକାର ଭାରତକୁ ସ୍ୱାଧୀନ କରିବାକୁ ବାଧ ହୋଇଥିଲା । ମାତ୍ର ବ୍ରିଟିଶ ବିରୋଧୀ ବୈଦେଶିକ ଶକ୍ତିଗୁଡ଼ିକର ସହାୟତାରେ ୧୯୪୩ ଅକ୍ଟୋବର ୨୧ରେ ସେ 'ଆଜାଦ୍ ହିନ୍ଦ୍ ସରକାର' ଗଠନ କରି ତାହାର ସର୍ବୋଚ୍ଚ କମାଣ୍ଡର ଭାବେ 'ନେତାଜୀ' ନାମ ବହନ କରି ନଥିଲେ, ଆମର ସ୍ୱାଧୀନତା ଆହୁରି ବିଳମ୍ବିତ ହୋଇଥାନ୍ତା । କାରଣ ବ୍ରିଟିଶ ସରକାର ନେତାଜୀଙ୍କର ଆଜାଦ୍ ହିନ୍ଦ୍ ଫଉଜ ଗଠନ ପ୍ରକ୍ରିୟାକୁ ଦେଖି ଭୟ ପାଇଯାଇଥିଲା ।

**ଗାନ୍ଧିଜୀ ବା ନେତାଜୀ ଉଭୟେ ନିଜ ନିଜ ମାର୍ଗରେ ଭାରତର ସ୍ୱାଧୀନତା ପାଇଁ ବ୍ୟାକୁଳିତ ହୋଇ ଉଠିଥିଲେ । ସେମାନଙ୍କ ମଧ୍ୟରେ ଆଦର୍ଶଗତ ମତଭେଦ ରହିଥିଲା ସତ, କିନ୍ତୁ ସେମାନେ କେହି କାହାରି ମାର୍ଗରେ ଅନ୍ତରାୟ ସୃଷ୍ଟି କରି ନଥିଲେ । ଆମର ଦୁର୍ଭାଗ୍ୟ ଯେ ଏ ଦୁଇ ବରପୁତ୍ର ସ୍ୱାଧୀନ ଭାରତରେ ଶାସନ କ୍ଷମତାର ନେତୃତ୍ୱ ନେଇ ନଥିଲେ ।**

କ୍ଷମତା ଲୋଭରେ ଯେଉଁମାନେ ଅବିଭକ୍ତ ଭାରତର ଶାସନ ଗାଦି ଧରିବାକୁ ଚାହିଁଲେ, ତତ୍କାଳୀନ ଚତୁର ବ୍ରିଟିଶ ଶାସକବର୍ଗ ଧର୍ମ ନାମରେ ଭାରତକୁ ଦ୍ୱିଧା ବିଭକ୍ତ କରିଦେଲେ - ଭାରତ ଓ ପାକିସ୍ଥାନ ନାମରେ । ଏବେ ବି ବିଶ୍ୱର ବୃହତ୍ ଶକ୍ତିଗୁଡ଼ିକ ଉଭୟ ଦେଶ ମଧ୍ୟରେ ଅସ୍ଥିରତା ଓ ଅଶାନ୍ତି ସୃଷ୍ଟି କରି ଭାରତକୁ ଦୁର୍ବଳ କରିବାକୁ ଉଦ୍ୟମ ଜାରି ରଖିଛନ୍ତି । ତେଣୁ ନେତାଜୀ ଆଜି ଖୁବ୍ ମନେ ପଡୁଛନ୍ତି ।

ସ୍ୱାଧୀନ ଭାରତରେ ଆମେ ଉଭୟ ଗାନ୍ଧିଜୀ ଓ ନେତାଜୀଙ୍କ ଜୟନ୍ତୀରେ ସେମାନଙ୍କୁ ସମ୍ମାନ ପ୍ରଦର୍ଶନ କ୍ଷେତ୍ରରେ ଊଣା କରି ନାହୁଁ । ପ୍ରାକ୍ ସ୍ୱାଧୀନତା କାଳରେ ଗାନ୍ଧିଜୀ ୧୯୪୨ର ଅସହଯୋଗ ଆନ୍ଦୋଳନ ସମୟରେ ଦେଇଥିବା 'କର ଅବା ମର'ର ଆହ୍ୱାନ କିମ୍ବା ନେତାଜୀଙ୍କର 'ଦିଲ୍ଲୀ ଚଲୋ' ବା 'ମୋତେ ରକ୍ତ ଦିଅ ମୁଁ ତୁମକୁ ସ୍ୱାଧୀନତା ଦେବି' ପରି ବଜ୍ର ଆହ୍ୱାନ ଯେପରି ଆମକୁ ଉଦ୍‌ବୁଦ୍ଧ କରୁଥିଲା, ଆଜି ସେପରି କୌଣସି ଆହ୍ୱାନ ସମ୍ଭବତଃ ଆମକୁ ଉଦ୍‌ବୁଦ୍ଧ କରିପାରି ନାହିଁ ଏ ପର୍ଯ୍ୟନ୍ତ ।

ଗତ କେତେବର୍ଷ ତଳେ ଡିସେମ୍ବର ୨୬ରେ ପ୍ରବଳ ଭୂକମ୍ପନ ଓ ମହାଜୁଆର ସୁନାମିରେ କ୍ଷତିଗ୍ରସ୍ତ ଭାରତର ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜକୁ ୧୯୪୩ ନଭେମ୍ବରରେ ନେତାଜୀ ବିଦେଶୀ ଶୃଙ୍ଖଳରୁ ମୁକ୍ତ କରି ଯଥାକ୍ରମେ 'ଶହୀଦ' ଓ 'ସ୍ୱରାଜ' ନାମକରଣ କରିଥିଲେ । ଏହାପରେ ନେତାଜୀ ୧୯୪୪ ଜାନୁଆରୀ ମାସରେ ତତ୍କାଳୀନ ବର୍ମା (ଏବର ମିଆଁମାର୍)ର ରାଜଧାନୀ ରେଙ୍ଗୁନକୁ ଆଜାଦ୍ ହିନ୍ଦ୍ ଫଉଜର ହେଡ଼କ୍ୱାର୍ଟର ବା ମୁଖ୍ୟଦପ୍ତର ସ୍ଥାନାନ୍ତର କରିଥିଲେ । ଜାପାନ ସାମରିକ ଶକ୍ତିର ସହାୟତାରେ ଆଜାଦ ହିନ୍ଦ୍ ଫଉଜର ସଶସ୍ତ୍ର ସୈନ୍ୟ ସାମନ୍ତକୁ ଧରି ବର୍ମା ସୀମାନ୍ତରେ ନେତାଜୀ ଭାରତ ଭୂମି ଉପରେ ୧୯୪୪ ମାର୍ଚ୍ଚ ୧୮ ତାରିଖରେ ପ୍ରଥମେ ପ୍ରବେଶ କରିଥିଲେ ଆଉ 'ଚଲୋ ଦିଲ୍ଲୀ, ଦିଲ୍ଲୀ ଚଲୋ'ର ମର୍ମସ୍ପର୍ଶୀ ଆହ୍ୱାନ ଦେଇଥିଲେ । ଭାରତକୁ ସ୍ୱାଧୀନ କରିବାକୁ ନେତାଜୀଙ୍କର ଏହି ଅଦ୍ୱିତୀୟ ଓ ଐତିହାସିକ ପଦକ୍ଷେପ ଯୋଗୁଁ ବ୍ରିଟିଶ ଶାସକମାନେ ପ୍ରକୃତରେ ଭୟଭୀତ ହୋଇ ପଡ଼ିଥିଲେ । ଏ ସବୁକୁ ଆମେ ଭୁଲିଗଲେ, ଆମେ ନିଜ ଜାତିର ଇତିହାସକୁ ଭୁଲିଯିବା ପରି ହେବ ।

ଆମର ପରମ ସୌଭାଗ୍ୟ ଯେ ନେତାଜୀ ଓଡ଼ିଶାରେ ଏଇ କଟକ ସହରର ଓଡ଼ିଆ ବଜାରରେ ୧୮୯୭ ମସିହା ଜାନୁଆରୀ ୨୩ରେ ଜନ୍ମଗ୍ରହଣ କରିଥିଲେ । ଦେଶପାଇଁ କାମ କରିବାକୁ ଓଡ଼ିଶା ହିଁ ତାଙ୍କ ପାଇଁ ଥିଲା ପ୍ରେରଣାର ଭୂମି । ଆମେମାନେ କଟକ ଗଲେ କେବେ ତାଙ୍କର ବାସସ୍ଥାନକୁ ତୀର୍ଥଭୂମି ବୋଲି ମନେ କରି କେବେ ବି ସେଠାରେ ପାଦ ପକାଉ ନାହୁଁ । ଲୋକଙ୍କୁ ସେହି ପୁଣ୍ୟଭୂମିକୁ ନେବା ଲାଗି କୌଣସି ବ୍ୟବସ୍ଥା ଥିବା ପରି ମନେହୁଏ ନାହିଁ ।

ନେତାଜୀଙ୍କ ବୈଶିଷ୍ଟ୍ୟ ଏହି ଯେ ଭାରତର ଅନ୍ୟାନ୍ୟ ବରପୁତ୍ରଙ୍କ ପରି ତାଙ୍କର ଶ୍ରାଦ୍ଧ ବାର୍ଷିକ ପାଳିତ ହୁଏ ନାହିଁ । କାରଣ ସେ ମରି ନାହାନ୍ତି ବୋଲି ଭାରତୀୟମାନଙ୍କର ଏକ ବଦ୍ଧମୂଳ ଧାରଣା ରହିଛି । ୧୯୪୫ ଅଗଷ୍ଟ ୧୮ ତାରିଖରେ ସେ ଛଦ୍ମବେଶରେ ବିମାନରେ ଯାଉଥିବା ବେଳେ ବିମାନଟି ଦୁର୍ଘଟଣାଗ୍ରସ୍ତ ହୋଇଥିଲା ଓ ସେ ପ୍ରାଣ ହରାଇଥିଲେ ବୋଲି ଯାହା କୁହାଯାଇଥାଏ, ତାହା ଜନସାଧାରଣଙ୍କ ମନରେ ପ୍ରତ୍ୟୟ ସୃଷ୍ଟି କରିପାରିନାହିଁ । ପ୍ରତ୍ୟକ୍ଷ ଭାବରେ ନେତାଜୀଙ୍କୁ କୌଣସି ଭାରତୀୟ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଓ ପରେ ଦେଖି ନଥିଲେ ହେଁ ନେତାଜୀ ପ୍ରତ୍ୟେକ ଭାରତୀୟଙ୍କ ନିକଟରେ ଦେଶାତ୍ମବୋଧର ପ୍ରେରଣା ହୋଇ ରହିଥିବା ପରିଲକ୍ଷିତ ହୋଇଛି ।

ଡି-୧୦/୫, ୟୁନିଟ୍-୮
ଭୁବନେଶ୍ୱର-୧୨



# ବୀର ସୁରେନ୍ଦ୍ର ସାଏ

ସିପାହୀ ବିଦ୍ରୋହର ପ୍ରାୟ ୪୦ ବର୍ଷ ପୂର୍ବରୁ ୧୮୧୭ ମସିହାରେ ଓଡ଼ିଶାରେ ପାଇକ ବିଦ୍ରୋହ ସଂଘଠିତ ହୋଇଥିଲା । ବୀର ଓଡ଼ିଆ ପାଇକମାନେ ସେମାନଙ୍କର ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରି ଓଡ଼ିଶା ମାଟିରୁ ଗୋରା ଫିରିଙ୍ଗି ଶାସକମାନଙ୍କୁ ହଟାଇବା ନିମନ୍ତେ ତରବାରୀ ଧରିବା ପାଇଁ ପଶ୍ଚାତପଦ ହୋଇନଥିଲେ । ଯାହାଫଳରେ ଫିରିଙ୍ଗି ଶାସନର ମେରୁଦଣ୍ଡ ଭାଙ୍ଗି ଯାଇଥିଲା । କିନ୍ତୁ ପାଇକମାନେ ନିରାଶ ହୋଇଥିଲେ । କାରଣ ଏହି ବିଦ୍ରୋହର ମୁଖ୍ୟ ଗୋପର କରୁଣାକର ସର୍ଦ୍ଦାରଙ୍କୁ ବନ୍ଦୀ କରାଗଲା, କୁଜଙ୍ଗର ନାରାୟଣ ପରମଗୁରୁ ଓ କନିକାର ବାମଦେବ ପାଟଯୋଷୀ ଦ୍ୱୀପାନ୍ତର ଦଣ୍ଡ ଭୋଗ କଲେ ଏବଂ ଜୟୀ ରାଜଗୁରୁ ଫାଶି ପାଇଲେ । ବିପ୍ଳବୀ ବକ୍ସି ଜଗବନ୍ଧୁ ବିଦ୍ୟାଧର ବିଶ୍ୱାସଘାତକତାର ଶିକାର ହୋଇ ମୃତ୍ୟୁବରଣ କଲେ । ପରିଶେଷରେ ମୁକୁନ୍ଦ ଦେବ ବନ୍ଦୀ ହେଲେ । ପାଇକ ବିଦ୍ରୋହର ତେଜିୟାନ୍ ଅଗ୍ନିଶିଖା ଲିଭିଗଲା । ପୁନର୍ବାର ପଶ୍ଚିମ ଓଡ଼ିଶାରେ ୧୮୨୭ ମସିହାରେ ବୀର ସୁରେନ୍ଦ୍ର ସାଏ ଏହି ନିର୍ବାପିତ ଅଗ୍ନିଶିଖାକୁ ପ୍ରଜ୍ୱଳିତ କରି ଇଂରେଜମାନଙ୍କ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କଲେ । ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା ସମ୍ବଲପୁର ମାଟିରୁ ବ୍ରିଟିଶ ଶାସନ ଲୋପ କରିବା । ତେଣୁ ସେ ୧୮୨୭-୧୮୬୪ ମସିହା ଜାନୁଆରୀ ୨୩ ତାରିଖ ପର୍ଯ୍ୟନ୍ତ ବିଦ୍ରୋହର ବହ୍ନିକୁ ପ୍ରଜ୍ୱଳିତ କରି ରଖିଥିଲେ । ପ୍ରଥମ ପର୍ଯ୍ୟାୟରେ ଇଂରେଜମାନଙ୍କ ବିରୁଦ୍ଧରେ ତାଙ୍କର ସଂଗ୍ରାମ ୧୮୨୭-୧୮୪୦ ମସିହା ପର୍ଯ୍ୟନ୍ତ ବିକ୍ଷିପ୍ତ ଏବଂ ସୀମିତ ଥିଲା । କିନ୍ତୁ ଦ୍ୱିତୀୟ ପର୍ଯ୍ୟାୟରେ ଏହା ଅଧିକ ସୁସଙ୍ଗଠିତ, ସୁସଂହତ ତଥା ବୀରତ୍ୱପୂର୍ଣ୍ଣ ଥିଲା । ସୁରେନ୍ଦ୍ର ସାଏଙ୍କ କୌଶଳପୂର୍ଣ୍ଣ ଗରିଲା ଯୁଦ୍ଧ, ରଣସଜ୍ଜା, ଦୃଢ଼ମନୋବଳ, ଅସୀମ ଧୈର୍ଯ୍ୟ ଓ ସାହସ ନିକଟରେ ଇଂରେଜମାନେ ହାର ମାନି ଥିଲେ । ଓଡ଼ିଶାର ଏହି ବରପୁତ୍ର, ବିପ୍ଳବୀ ବୀର ସୁରେନ୍ଦ୍ର ସାଏଙ୍କ ବିପ୍ଳବର ଜୟଗାଥା ଓଡ଼ିଶା ଇତିହାସରେ ଚିରଦିନ ପାଇଁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ପୃଷ୍ଠା ମଣ୍ଡିତ କରୁଥିବ ।

ସେହି ମହାନ୍ ବୀର ପୁରୁଷ ଓ ଭାରତର ସର୍ବଶ୍ରେଷ୍ଠ ସ୍ୱାଧୀନତା ସଂଗ୍ରାମୀ ୧୮୦୯ ମସିହା ଜାନୁଆରୀ ମାସ ୨୩ ତାରିଖ ଦିନ ସମ୍ବଲପୁର ସହରର ଉତ୍ତରକୁ ପ୍ରାୟ ୨୧ ମାଇଲ ଦୂରରେ ଅବସ୍ଥିତ ବରଗାଁ ବା ଖିଣ୍ଡା ଗ୍ରାମରେ ଚୌହାନ୍ ରାଜ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ସୁରେନ୍ଦ୍ର ସାଏ ଗାଙ୍ଗପୁର ରାଜ୍ୟର ହାତୀବାଡ଼ି ଜମିଦାରଙ୍କ କନ୍ୟାଙ୍କୁ ବିବାହ କରିଥିଲେ ଏବଂ ତାଙ୍କର ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ଥିଲା । ତାଙ୍କ ପୁତ୍ରର ନାମ ହେଉଛି ମିତ୍ରଭାନୁ ସାଏ ।

୧୮୨୭ ମସିହାରେ ସମ୍ବଲପୁରର ରାଜା ମହାରାଜା ସାଏ ଅପୁତ୍ରିକ ହୋଇ ମୃତ୍ୟୁବରଣ କଲେ । ମହାରାଜା ସାଏଙ୍କ ଉତ୍ତରାଧିକାରୀ କିଏ ହେବ ତାହା ନିରୂପଣ କରିବା କ୍ଷମତା ଇଂରେଜ ସରକାର ନିଜ ହାତକୁ ନେଲେ । ରାଜଗାଦି ଦାବି କରିଥିବା ବହୁ ବ୍ୟକ୍ତିଙ୍କୁ ଉପେକ୍ଷା କରି ବିଧବା ରାଣୀ ମୋହନ କୁମାରୀଙ୍କ ହାତରେ ଶାସନ ଦାୟିତ୍ୱ ନ୍ୟସ୍ତ କଲେ । ସେହି କାରଣରୁ ବହୁ ଆଦିବାସୀ ଜମିଦାର ବିଦ୍ରୋହ କରିଥିଲେ । ବଳରାମ ସାଏ ଓ ସୁରେନ୍ଦ୍ର ସାଏ ଏହି ବିପ୍ଳବର ନେତୃତ୍ୱ ନେଇଥିଲେ । ଇଂରେଜମାନେ ନିଶ୍ଚିତ ଥିଲେ ଯେ ରାଣୀ ମୋହନ କୁମାରୀ ସୁଚାରୁରୂପେ ଶାସନ କାର୍ଯ୍ୟ ପରିଚାଳନା କରିପାରିବେ ନାହିଁ । ତେଣୁ ରାଣୀ ସେମାନଙ୍କ ହାତରେ ଖେଳନା ହୋଇ ରହିବେ ଏବଂ ଇଂରେଜମାନେ ନିଜର ରାଜନୈତିକ ଅଭିସନ୍ଧି ହାସଲ କରିପାରିବେ । ପ୍ରକୃତ ପକ୍ଷେ ସମ୍ବଲପୁର ରାଜବଂଶର ସୁରେନ୍ଦ୍ର ସାଏ ରାଜଗାଦି ଲାଭ କରିବା କଥା, ମାତ୍ର ଇଂରେଜମାନେ ଜାଣିଥିଲେ ସୁରେନ୍ଦ୍ର ସାଏ କେବେ ହେଲେ ତାଙ୍କର ଅନୁଗାମୀ ହେବେ ନାହିଁ । ତେଣୁ ରାଣୀ ମୋହନ କୁମାରୀ ରାଜ୍ୟ ଶାସନ ପରିଚାଳନା କରିବା ପ୍ରତିବାଦରେ ସମ୍ବଲପୁର ଅଞ୍ଚଳରେ ବିଦ୍ରୋହର ବହ୍ନି ଜଳି ଉଠିଥିଲା ।

ସୁରେନ୍ଦ୍ର ସାଏଙ୍କ ଜୀବନ କାଳ ୭୫ ବର୍ଷ ମଧ୍ୟରୁ ଦୀର୍ଘ ୩୭ ବର୍ଷ କାରାଗାରରେ କଟିଥିଲା । ସେ ୧୮୨୭ରୁ ୧୮୪୦ ପର୍ଯ୍ୟନ୍ତ ୧୩ ବର୍ଷ ଓ ୧୮୫୭ରୁ ୧୮୬୪ ପର୍ଯ୍ୟନ୍ତ ୭ ବର୍ଷ ଏହିପରି ଦୁଇଟି ପର୍ଯ୍ୟାୟରେ ମୋଟରେ ୨୦ ବର୍ଷ ଇଂରେଜ ସରକାରଙ୍କ ବିରୁଦ୍ଧରେ ନିରବଚ୍ଛିନ୍ନ ଭାବରେ ଘମାଘୋଟ ଲଢ଼େଇ

କରିଥିଲେ । ତାଙ୍କର ଅଦ୍ଭୁତ ସଂଗଠନ ଶକ୍ତି, ଅସୀମ ପରାକ୍ରମ, ଅସାଧାରଣ ରଣକୌଶଳ ବ୍ରିଟିଶ୍ ଶାସକ ଓ ସୈନ୍ୟବାହିନୀକୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । ସେତେବେଳେ କ୍ୟାପ୍‌ଟେନ୍ ହିଗ୍ନସ୍‌ଙ୍କ ଅଧିନାୟକତ୍ୱରେ ସମ୍ବଲପୁରରେ ଇଂରେଜମାନଙ୍କ ରାମଗଡ଼ ବାଟାଲିୟନ୍ ଅବସ୍ଥାପିତ ହୋଇଥାନ୍ତି । ସୁରେନ୍ଦ୍ର ସାଏଙ୍କ ପକ୍ଷରୁ ତାଙ୍କ ଅନୁଗାମୀମାନେ ଧନୁଶର ଧରି ଗରିଲା ଯୁଦ୍ଧ କରିଥିବାରୁ ଇଂରେଜ ସୈନ୍ୟମାନେ ତାର ମୁକାବିଲା କରିପାରି ନଥିଲେ । ପରେ ହଜାରୀବାଗ୍‌ର କ୍ୟାପ୍‌ଟେନ୍ ଉଇଲକିନସନ୍‌ଙ୍କ ନିର୍ଦ୍ଦେଶରେ ଆଉ ଏକ ସୈନ୍ୟବାହିନୀ ସମ୍ବଲପୁରରେ ଆସି ଯୋଗ ଦେଲେ । ଏହାପରେ ବିଦ୍ରୋହ କିଛି ମାତ୍ରାରେ ଦମନ ହୋଇଥିଲେ ମଧ୍ୟ ସମ୍ପୂର୍ଣ୍ଣ ପ୍ରଶମିତ ହୋଇପାରି ନଥିଲା । ଇଂରେଜମାନେ ବାଧ୍ୟ ହୋଇ ରାଣୀ ମୋହନ କୁମାରୀଙ୍କୁ ଗାଦିଚ୍ୟୁତ କରି ପୁନର୍ବାର ରାଜବଂଶର ଦୂର ସମ୍ପର୍କୀୟ ବ୍ୟକ୍ତି ନାରାୟଣ ସିଂହଙ୍କୁ ସମ୍ବଲପୁର ରାଜଗାଦି ପ୍ରଦାନ କଲେ । ମାତ୍ର ସେ ଥିଲେ ସମ୍ପୂର୍ଣ୍ଣ ଅଯୋଗ୍ୟ । ଏହା ଫଳରେ ପୁଣି ବିଦ୍ରୋହ ମୁଣ୍ଡ ଟେକିଲା । ୧୮୩୭ ଖ୍ରୀଷ୍ଟାବ୍ଦରେ ରାସପୂର୍ଣ୍ଣିମା ମଧ୍ୟରାତ୍ରିରେ ଦେବ୍ରୀଗଡ଼ଠାରେ ସୁରେନ୍ଦ୍ର ସାଏ, ଉଦ୍ୟନ୍ତ ସାଏ, ବଳରାମ ସିଂହ ଓ ଲୋଚନପୁର ଜମିଦାର ବଳଭଦ୍ର ଦେଓ ମିଳିତ ହୋଇ ଭବିଷ୍ୟତ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରୁଥିବା ସମୟରେ ଇଂରେଜମାନେ ଅଚାନକ ସେଠାରେ ପହଞ୍ଚି ବଳଭଦ୍ର ଦେଓଙ୍କୁ ହତ୍ୟା କଲେ । ସୌଭାଗ୍ୟକ୍ରମେ ସୁରେନ୍ଦ୍ର ସାଏ ତାଙ୍କ ଭାଇମାନଙ୍କ ସହ କୌଶଳ କରି ଖସି ଯାଇଥିଲେ । ୧୮୪୦ ଖ୍ରୀଷ୍ଟାବ୍ଦରେ ଦକ୍ଷିଣ-ପଶ୍ଚିମ ସୀମାନ୍ତର ତତ୍କାଳୀନ ଇଂରେଜ ଏଜେଣ୍ଟ କର୍ଣ୍ଣେଲ ଆଉସ୍ଲେଙ୍କ ସହାୟତାରେ ସୁରେନ୍ଦ୍ର ସାଏ, ଉଦ୍ୟନ୍ତ ସାଏ ଓ ବଳରାମ ସିଂହଙ୍କୁ ବନ୍ଦୀ କରାଯାଇ ଆଜୀବନ ସଶ୍ରମ କାରାଦଣ୍ଡରେ ଦଣ୍ଡିତ କରାଗଲା । ସେମାନେ ହଜାରୀବାଗ ଜେଲରେ ବନ୍ଦୀ ହୋଇ ରହିଲେ । ଏହିଠାରେ ସୁରେନ୍ଦ୍ର ସାଏଙ୍କ ପ୍ରଥମ ପର୍ଯ୍ୟାୟ ସଂଗ୍ରାମର ଯବନିକା ପଡ଼ିଲା ।

୧୮୪୯ ଖ୍ରୀଷ୍ଟାବ୍ଦରେ ନାରାୟଣ ସିଂହଙ୍କର ମୃତ୍ୟୁ ବେଳକୁ ସୁରେନ୍ଦ୍ର ସାଏ ହଜାରୀବାଗରେ ବନ୍ଦୀ ଜୀବନଯାପନ କରୁଥାନ୍ତି । ୧୮୫୭ରେ ଭାରତର ସିପାହୀମାନେ ଇଂରେଜ ସରକାରଙ୍କ ବିରୁଦ୍ଧରେ ପ୍ରଥମ ସ୍ୱାଧୀନତା ସଂଗ୍ରାମ ଆରମ୍ଭ କରିଥିଲେ । ସେହି ବର୍ଷ ଜୁଲାଇ ମାସ ୩୦ ତାରିଖ ଦିନ ସିପାହୀମାନେ ବଳ ପ୍ରୟୋଗପୂର୍ବକ ହଜାରୀବାଗ୍ ଜେଲରେ ପ୍ରବେଶ କରି ସୁରେନ୍ଦ୍ର ସାଏଙ୍କ ସମେତ ୩୨ ଜଣ ବନ୍ଦୀଙ୍କୁ ମୁକ୍ତ କରି ଦେଇଥିଲେ । ମୁକ୍ତି ପାଇ ସୁରେନ୍ଦ୍ର ସାଏ ସଙ୍ଗେ ସଙ୍ଗେ ସମ୍ବଲପୁର ଫେରି ଆସିଲେ ଏବଂ ସମ୍ବଲପୁରବାସୀଙ୍କୁ ସୁସଙ୍ଗଠିତ କରି ପୁନର୍ବାର ସଂଗ୍ରାମ କରିବାକୁ ଆଗେଇ ଆସିଲେ । ଦେବ୍ରୀଗଡ଼ ହେଲା ସୁରେନ୍ଦ୍ରଙ୍କ ସଂଗ୍ରାମର କେନ୍ଦ୍ରସ୍ଥଳ । କୌଶଳକ୍ରମେ ସୁରେନ୍ଦ୍ର ସାଏ ପ୍ରଥମେ ସମ୍ବଲପୁର ଅଞ୍ଚଳରେ ଥିବା ଇଂରେଜମାନଙ୍କର ବାହ୍ୟ ଯୋଗାଯୋଗ ସମ୍ପର୍କ ଛିନ୍ନ କଲେ । ବଡ଼ ବଡ଼ ପଥର ଖଣ୍ଡ ରଖି ରାସ୍ତା ଅବରୋଧ କରିବା ସହ ପାହାଡ଼ ଉପରେ ଥିବା ଶିଆଳୀ ଲତାରେ ବଡ଼ ବଡ଼ ପଥରକୁ ବାନ୍ଧିରଖି ଆବଶ୍ୟକ ସ୍ଥଳେ ଲତାକୁ କାଟି ଦେଉଥିଲେ । ଫଳରେ ପଥରଖଣ୍ଡମାନ ପଡ଼ି ଇଂରେଜମାନଙ୍କୁ ଆଘାତ ଦେଉଥିଲା । ଅନ୍ୟ ପକ୍ଷରେ ଇଂରେଜମାନଙ୍କ ଗୁଳିଗୁଳା ଘଞ୍ଚ ଜଙ୍ଗଲରେ ଥିବା ଗଛଗୁଡ଼ିକରେ ବାଜି ସବୁ ନଷ୍ଟଭ୍ରଷ୍ଟ ହୋଇଯାଉଥିଲା । ପାହାଡ଼ ମଧ୍ୟସ୍ଥ ଘଞ୍ଚ ଜଙ୍ଗଲରେ ସୁରେନ୍ଦ୍ରଙ୍କ ପକ୍ଷର ଆକ୍ରମଣକାରୀମାନେ ଲୁଚିଛପି ଗରିଲା ଯୁଦ୍ଧ କରିବା ପାଇଁ ବେଶ୍ ସୁବିଧା ପାଉଥିଲେ । ଇଂରେଜମାନଙ୍କ ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ର ଆଗରେ ସମ୍ବଲପୁରବାସୀଙ୍କ ଧନୁତୀର, ବର୍ଚ୍ଛା, ଖଣ୍ଡା, ନିଆଁଧରା ବନ୍ଧୁକ ଆଦି ବିଶେଷ କିଛି କାମ ଦେବ ନାହିଁ ବୋଲି ସେ ଗରିଲା ଯୁଦ୍ଧର ଆଶ୍ରୟ ନେଇଥିଲେ ।

୧୮୬୧ରେ ମେଜର ଇମ୍ପେଙ୍କୁ ସମ୍ବଲପୁରର ଡେପୁଟୀ କମିଶନର ରୂପେ ନିଯୁକ୍ତି ଦିଆଗଲା । ମେଜର ଇମ୍ପେ ଯୁଦ୍ଧ ନୀତି ପରିତ୍ୟାଗ କରି ଶାନ୍ତି ନୀତି ଅନୁସରଣ କଲେ । ସୁରେନ୍ଦ୍ର ସାଏଙ୍କ ବିରୁଦ୍ଧରେ ଯୁଦ୍ଧ ବନ୍ଦ ଘୋଷଣା କଲେ । ଆତ୍ମ ସମର୍ପଣ କରିଥିବା ବିଦ୍ରୋହୀମାନଙ୍କୁ କ୍ଷମା ପ୍ରଦାନ କରି ସେମାନଙ୍କର ବାଜ୍ୟାପ୍ତ ସମ୍ପତ୍ତି ଫେରସ୍ତ କରି ଦିଆଯିବାର ନିଷ୍ପତ୍ତି ନେଲେ । ଏହାପରେ ସୁରେନ୍ଦ୍ରଙ୍କର ଭାଇ ଓ ପୁତ୍ର ଆତ୍ମସମର୍ପଣ କରିଥିଲେ । ସେମାନଙ୍କୁ ଇମ୍ପେ ସମ୍ମାନର ସହ ଖିଣ୍ଡା ଗ୍ରାମରେ ଆଶ୍ରୟ ଦେଇଥିଲେ । ପରେ ପରେ ୧୮୬୨ ମସିହା ମଇ ମାସ ୧୬ ତାରିଖ ଦିନ ରାତିରେ ଘୋର ଜଙ୍ଗଲ ମଧ୍ୟରେ ଇମ୍ପେ ସାହେବଙ୍କ ସହ ସୁରେନ୍ଦ୍ର ସାଏଙ୍କର ସାକ୍ଷାତ ହେଲା ଏବଂ ସେହିଠାରେ ସୁରେନ୍ଦ୍ର ସାଏ ଆତ୍ମସମର୍ପଣ କରିଥିଲେ । ୧୮୬୩ରେ ଇମ୍ପେ ସାହେବଙ୍କର ମୃତ୍ୟୁ ହେବାରୁ ସମ୍ବଲପୁରର ରାଜନୈତିକ ପରିସ୍ଥିତି ବଦଳିଗଲା । ମେଜର ଇମ୍ପେଙ୍କ ସ୍ଥାନରେ କ୍ୟାପ୍‌ଟେନ୍ କମ୍ବରଲେଜ୍ ନିଯୁକ୍ତି ପାଇଲେ । କମ୍ବରଲେଜ୍ ଉଚ୍ଚ ପୋଲିସ୍ ଅଫିସର କ୍ୟାପ୍‌ଟେନ୍ ଷ୍ଟୁଆର୍ଟ ଓ ମିଷ୍ଟର ବେରିଲ୍‌ଙ୍କ ସହାୟତାରେ ୧୮୬୪ ମସିହା ଜାନୁଆରୀ ୨୩ ତାରିଖ ରାତ୍ର ୧୧ ଘଣ୍ଟା ସମୟରେ ସୁରେନ୍ଦ୍ର ସାଏ ଓ ତାଙ୍କ ପରିବାରବର୍ଗ ଶୋଇଥିବା ସମୟରେ ତାଙ୍କ ଘର ଉପରେ ଚଢ଼ାଉକରି ସେମାନଙ୍କୁ ବନ୍ଦୀ କଲେ । ସେହି ରାତ୍ରିରେ ସେମାନଙ୍କୁ ରାୟପୁର ନିଆଗଲା । ପରେ ସେମାନଙ୍କୁ ନାଗପୁର ଜେଲ୍ ଓ ଆଜୀବନ ଦେଶାନ୍ତର ଦଣ୍ଡରେ ଦଣ୍ଡିତ କରାଯାଇ ୧୮୬୬ ମସିହାରେ ଅସୀରଗଡ଼ ଦୁର୍ଗକୁ ପଠାଇ ଦିଆଗଲା । ଉକ୍ତ ଅସୀରଗଡ଼ ଦୁର୍ଗରେ ୧୮୮୪ ମସିହା ଫେବୃୟାରୀ ମାସ ୨୮ ତାରିଖରେ ବୀର ସୁରେନ୍ଦ୍ର ସାଏଙ୍କ ଜୀବନଦୀପ ନିର୍ବାପିତ ହେଲା ।

ଘୋର ଅରଣ୍ୟ ମଧ୍ୟରେ ଲୁଚି ରହି ସାହସୀ ଓଡ଼ିଆମାନଙ୍କୁ ଏକତ୍ର କରି ବିଭିନ୍ନ ରଣକୌଶଳରେ ସେମାନଙ୍କୁ ତାଲିମ ଦେଇ ଶୃଙ୍ଖଳାବୋଧ ଓ ନୈତିକତାକୁ ବଜାୟ ରଖି ସୁରେନ୍ଦ୍ର ସାଏ ଇଂରେଜମାନଙ୍କ ବିରୁଦ୍ଧରେ ଏକକ ସଂଗ୍ରାମର ନେତୃତ୍ୱ ନେଇଥିଲେ । ଏହା ଓଡ଼ିଆ ଜାତିର ଇତିହାସରେ ଏକ ସ୍ମରଣୀୟ ଘଟଣା । ଓଡ଼ିଶାର ଏହି ଜାତୀୟ ବୀରଙ୍କର ଧୈର୍ଯ୍ୟ, ସାହସ, ଦୃଢ଼ ନେତୃତ୍ୱ ଓ ମନୋବଳ ତଥା ଶୃଙ୍ଖଳା ଓ ନୈତିକତା ଏବଂ ମହତ୍ ଆଦର୍ଶ ଯୁଗେ ଯୁଗେ ଓଡ଼ିଆ ଜାତି ନିମନ୍ତେ ପ୍ରେରଣାର ଉତ୍ସ ହୋଇ ରହିଥିବ ।

(ସୌଜନ୍ୟ : ସୂଚନା ଓ ଲୋକ ସଂପର୍କ ବିଭାଗ)

## ସ୍ୱରାଷ୍ଟ୍ର (ନିର୍ବାଚନ) ବିଭାଗ

ଅଧିସୂଚନା

ତାରିଖ. 15.12.2006

ସଂ. 5858/ IE-(A)-06/2006 / Elec. ଇଣ୍ଡିଆ ଗେଜେଟ୍‌, ଅସାଧାରଣ, ଭାଗ II , ଅନୁଭାଗ 3 (iii) ରେ ପ୍ରକାଶିତ ସୀମା ନିର୍ଦ୍ଧାରଣ କମିଶନଙ୍କ ନିମ୍ନସୂଚିତ ଅଧିସୂଚନା ଓ ଆଦେଶ ସର୍ବସାଧାରଣଙ୍କ ଅବଗତି ନିମନ୍ତେ ଏତଦ୍ଦ୍ୱାରା ପ୍ରକାଶ କରାଗଲା

ଆଦେଶକ୍ରମେ,

ଅଳକା ପଣ୍ଡା
ମୁଖ୍ୟ ନିର୍ବାଚନ ଅଧିକାରୀ ଓ ପଦପ୍ରଯୁକ୍ତ
କମିଶନର -ତଥା-ଶାସନ ସଚିବ

## ସୀମା ନିର୍ଦ୍ଧାରଣ କମିଶନ

ନିର୍ବାଚନ ସଦନ, ଅଶୋକ ରୋଡ, ନୂଆଦିଲ୍ଲୀ-110001

ନଂ 282/ଓ.ଆର୍./.2006

ତା. 15 ଡିସେମ୍ବର 2006
24 ଅଗ୍ରହାୟଣ. 1928 (ସାକ)

ଅଧିସୂଚନା

ସୀମା ନିର୍ଦ୍ଧାରଣ ଅଧିନିୟମ, 2002 (2002 ର 33) ର ଧାରା 10 ର ଉପଧାରା (1) ର ଅନୁସରଣକ୍ରମେ ଓଡିଶା ରାଜ୍ୟର ସଂସଦୀୟ ଓ ବିଧାନସଭା ନିର୍ବାଚନମଣ୍ଡଳୀଗୁଡିକର ସୀମା ନିର୍ଦ୍ଧାରଣ ସଂକ୍ରାନ୍ତରେ ଅଧିନିୟମର ଧାରା ୨ର ଉପଧାରା (2) ଓ ଧାରା 4ର ଉପଧାରା (2) ଅନୁଯାୟୀ ସୀମା ନିର୍ଦ୍ଧାରଣ କମିଶନଙ୍କ ଦ୍ୱାରା ଦିଆଯାଇଥିବା ନିମ୍ନଲିଖିତ ଆଦେଶ ଏତଦ୍ଦ୍ୱାରା ପ୍ରକାଶ କରାଗଲା ।

# ଓଡ଼ିଶାରେ ନିର୍ବାଚନ ମଣ୍ଡଳୀଗୁଡ଼ିକର ସୀମା ନିର୍ଦ୍ଧାରଣ

**ଆଦେଶ ସଂଖ୍ୟା-୩୨**

ଯେହେତୁ ସୀମା ନିର୍ଦ୍ଧାରଣ (ସଂଶୋଧନ) ଅଧିନିୟମ, ୨୦୦୩ (୨୦୦୪ର ୩) ଦ୍ୱାରା ସଂଶୋଧିତ ହେବା ପ୍ରକାରେ ସୀମା ନିର୍ଦ୍ଧାରଣ ଅଧିନିୟମ, ୨୦୦୨ (୨୦୦୨ର ୩୩)ର ଧାରା ୮ ଓ ୪ର ଅନୁସରଣକ୍ରମେ ସୀମା ନିର୍ଦ୍ଧାରଣ କମିଶନ ତା.୧୭ ମାର୍ଚ୍ଚ, ୨୦୦୬ରେ ଭାରତ ଗେଜେଟର ଅସାଧାରଣ ସଂସ୍କରଣ ଓ ଓଡ଼ିଶା ରାଜ୍ୟ ଗେଜେଟ (ଅସାଧାରଣ ସଂସ୍କରଣ)ରେ ପ୍ରକାଶିତ ତାହାଙ୍କ ଆଦେଶ ସଂଖ୍ୟା ୧୯, ତା.୧୭ ମାର୍ଚ୍ଚ, ୨୦୦୬ରେ ଅବଧାରିତ କରିଥିଲେ ଯେ- (i) ଲୋକସଭାରେ ଓଡ଼ିଶା ରାଜ୍ୟ ପାଇଁ ମୋଟ ଏକୋଇଶି (୨୧) ଗୋଟି ଆସନ ଆବଣ୍ଟିତ ହେବ ଯହିଁରୁ ତିନି (୩) ଗୋଟି ଆସନ ଅନୁସୂଚିତ ଜାତି ଓ ପାଞ୍ଚ (୫) ଗୋଟି ଆସନ ଅନୁସୂଚିତ ଜନଜାତିଙ୍କ ନିମନ୍ତେ ସଂରକ୍ଷିତ ରହିବ ଏବଂ (ii) ରାଜ୍ୟର ବିଧାନସଭା ପାଇଁ ମୋଟ ଏକଶହ ସତଚାଳିଶି (୧୪୭) ଗୋଟି ଆସନ ଦିଆଯିବ ଯହିଁରୁ ଚବିଶ (୨୪) ଗୋଟି ଆସନ ଅନୁସୂଚିତ ଜାତି ଓ ତେତିଶ (୩୩) ଗୋଟି ଆସନ ଅନୁସୂଚୀତ ଜନଜାତି ପାଇଁ ସଂରକ୍ଷିତ ରହିବ, ଏବଂ

ଯେହେତୁ ଉକ୍ତ ଅଧିନିୟମର ଧାରା ୫ର ଉପଧାରା (୧) ଓ ଧାରା ୯ର ଉପଧାରା (୧)ର ଅନୁସରଣକ୍ରମେ ସୀମା ନିର୍ଦ୍ଧାରଣ କମିଶନ, ରାଜ୍ୟର ସଂସଦୀୟ ଓ ବିଧାନସଭା ନିର୍ବାଚନ ମଣ୍ଡଳୀଗୁଡ଼ିକର ସୀମା ନିର୍ଦ୍ଧାରଣ ନିମନ୍ତେ କରିଥିବା କାର୍ଯ୍ୟବିଧିରେ ରାଜ୍ୟରୁ ସହଯୋଗୀ ସଦସ୍ୟମାନଙ୍କ ସହଯୋଗ ନେଇଥିଲେ, ଏବଂ

ଯେହେତୁ ଉକ୍ତ ଅଧିନିୟମର ଧାରା ୯ର ଉପଧାରା (୨)ର ଅନୁସରଣକ୍ରମେ ୨୦୦୧ର ଜନଗଣନା ଭିତ୍ତିରେ ସଂସଦୀୟ ଓ ବିଧାନସଭା ନିର୍ବାଚନମଣ୍ଡଳୀଗୁଡ଼ିକର ସୀମା ନିର୍ଦ୍ଧାରଣ ନିମନ୍ତେ ସୀମା ନିର୍ଦ୍ଧାରଣ କମିଶନ ତାହାଙ୍କ ପ୍ରସ୍ତାବଗୁଡ଼ିକ ସହିତ କମିଶନର ଭିନ୍ନମତ ପୋଷଣ କରୁଥିବା ଯେଉଁ ସହଯୋଗୀ ସଦସ୍ୟମାନେ ନିଜର ପ୍ରସ୍ତାବ ପ୍ରକାଶ କରିବା ପାଇଁ ଇଚ୍ଛା କରିଥିଲେ ସେମାନଙ୍କର ପ୍ରସ୍ତାବ ଭାରତ ଗେଜେଟର ଅସାଧାରଣ ସଂସ୍କରଣ ଓ ଓଡ଼ିଶା ରାଜ୍ୟ ଗେଜେଟ (ଅସାଧାରଣ ସଂସ୍କରଣ)ରେ ତା.୧୭ ମାର୍ଚ୍ଚ, ୨୦୦୬ରେ ପ୍ରକାଶିତ କରି ତା.୧୦ ଏପ୍ରିଲ, ୨୦୦୬ ସୁଦ୍ଧା ଉପରୋକ୍ତ ପ୍ରସ୍ତାବ ସଂକ୍ରାନ୍ତରେ ଆପତ୍ତି ଓ ପ୍ରସ୍ତାବମାନ ଆହ୍ୱାନ କରିଥିଲେ, ଏବଂ

ଯେହେତୁ ଉକ୍ତ ଅଧିନିୟମର ଧାରା ୯ର ଉପଧାରା (୨)ର ଅନୁସରଣକ୍ରମେ କମିଶନଙ୍କ ଉପରଲିଖିତ ଆଦେଶ ସଂଖ୍ୟା ୧୯ ଓ ଭିନ୍ନମତ ପୋଷଣ କରୁଥିବା ସହଯୋଗୀ ସଦସ୍ୟମାନଙ୍କ ପ୍ରସ୍ତାବ ସହିତ କମିଶନଙ୍କ ଉପରଲିଖିତ ଚିଠା ପ୍ରସ୍ତାବ ମଧ୍ୟ ସ୍ଥାନୀୟ ସମ୍ବାଦପତ୍ରଗୁଡ଼ିକରେ ତା.୧୭/୧୮ ମାର୍ଚ୍ଚ, ୨୦୦୬ରେ ପ୍ରକାଶିତ ହୋଇଥିଲା ଏବଂ ରେଡ଼ିଓ, ଟେଲିଭିଜନ ଓ ଅନ୍ୟାନ୍ୟ ଗଣମାଧ୍ୟମଗୁଡ଼ିକ ଦ୍ୱାରା ମଧ୍ୟ ପ୍ରସାରିତ କରାଯାଇଥିଲା, ଏବଂ

ଯେହେତୁ ଉକ୍ତ ଅଧିନିୟମର ଧାରା ୯ର ଉପଧାରା (୨)ର ଅନୁସରଣକ୍ରମେ କମିଶନ ସମସ୍ତ ଆପତ୍ତି ଓ ପ୍ରସ୍ତାବଗୁଡ଼ିକୁ ବିଚାର କରିବା ପାଇଁ ତାହାଙ୍କ ସର୍ବସାଧାରଣ ବୈଠକର ସ୍ଥାନ ଓ ତାରିଖ ଧାର୍ଯ୍ୟ କରି ତା.୧୭ ମାର୍ଚ୍ଚ, ୨୦୦୬ରେ ଏକ ସର୍ବସାଧାରଣ ନୋଟିସ୍ ମଧ୍ୟ ଜାରି କରିଥିଲେ, ଏବଂ

ଯେହେତୁ ଉକ୍ତ ଅଧିନିୟମର ଧାରା ୯ର ଉପଧାରା (୨)ର ଅନୁସରଣକ୍ରମେ କମିଶନ ବ୍ରହ୍ମପୁରଠାରେ ତା.୨୩ ମଇ, ୨୦୦୬ରେ ଭୁବନେଶ୍ୱରଠାରେ ତା.୨୪ ମଇ, ୨୦୦୬ରେ ଏବଂ ସମ୍ବଲପୁରଠାରେ ତା.୨୫ ଓ ୨୬ ମଇ, ୨୦୦୬ରେ ସାଧାରଣ ବୈଠକ ଅନୁଷ୍ଠିତ କରିଥିଲେ ଏବଂ ଜନସାଧାରଣଙ୍କଠାରୁ ଶୁଣାଣି କରିଥିଲେ ଏବଂ କମିଶନଙ୍କ ନିକଟକୁ ପୂର୍ବରୁ ପଠାଯାଉଥିବା ଲିଖିତ ପ୍ରତିବେଦନଗୁଡ଼ିକ ବାହାରେ ମୌଖିକ ଓ ଲିଖିତ ଆବେଦନ କରିବାକୁ ସଂପୂର୍ଣ୍ଣ ସୁଯୋଗ ଦେଇଥିଲେ, ଏବଂ

ଯେହେତୁ କମିଶନ, ସର୍ବସାଧାରଣ ଶୁଣାଣି ବେଳେ ଉତ୍‌ଥାପିତ ବିଷୟ, ପ୍ରସ୍ତାବ ଓ ମତାମତ ଉପରେ ସହଯୋଗୀ ସଦସ୍ୟମାନଙ୍କ ସହିତ ଆଲୋଚନା କରିଥିଲେ ଓ କମିଶନଙ୍କ ଉକ୍ତ ପ୍ରସ୍ତାବ ସଂକ୍ରାନ୍ତରେ ତାଙ୍କ ନିକଟରେ କରାଯାଇଥିବା ବା ତାଙ୍କୁ ଅନ୍ୟଥା ମିଳିଥିବା ସମସ୍ତ ଆପତ୍ତି ଓ ପ୍ରସ୍ତାବଗୁଡ଼ିକୁ ସମ୍ବିଧାନ ଓ ଉକ୍ତ ଅଧିନିୟମର ସୁସଙ୍ଗତ ବ୍ୟବସ୍ଥାଗୁଡ଼ିକୁ ଧ୍ୟାନରେ ରଖି ବିଚାର କରିଥିଲେ,

ତେଣୁ ବର୍ତ୍ତମାନ ସଂଶୋଧିତ ହେବା ପ୍ରକାରେ ଉକ୍ତ ଅଧିନିୟମର ଧାରା ୯ର ଉପଧାରା (୨)ର ଖଣ୍ଡ (ଘ) ଓ ଧାରା ୪ର ଉପଧାରା (୨)ର ଅନୁସରଣକ୍ରମେ ସୀମା ନିର୍ଦ୍ଧାରଣ କମିଶନ ନିମ୍ନମତେ ଅବଧାରିତ କରୁଛନ୍ତି :

(୧) ରାଜ୍ୟର ବିଧାନସଭାକୁ ନିର୍ବାଚନ ଉଦ୍ଦେଶ୍ୟରେ ଓଡ଼ିଶା ରାଜ୍ୟର କ୍ଷେତ୍ରୀୟ ବିଧାନସଭା ନିର୍ବାଚନ ମଣ୍ଡଳୀଗୁଡ଼ିକ କିପରି ବିଭାଜିତ ହେବ ଓ ସେପରି ପ୍ରତ୍ୟେକ ନିର୍ବାଚନ ମଣ୍ଡଳୀର ବିସ୍ତାର, ସାରଣୀ-କ ରେ ଦର୍ଶାଯିବା ପ୍ରକାରେ ହେବ ।

(୨) ଲୋକସଭାକୁ ନିର୍ବାଚନ ଉଦ୍ଦେଶ୍ୟରେ, ଓଡ଼ିଶା ରାଜ୍ୟର କ୍ଷେତ୍ରୀୟ ସଂସଦୀୟ ନିର୍ବାଚନ ମଣ୍ଡଳୀଗୁଡ଼ିକ କିପରି ବିଭାଜିତ ହେବ ଓ ସେପରି ପ୍ରତ୍ୟେକ ନିର୍ବାଚନ ମଣ୍ଡଳୀର ବିସ୍ତାର ସାରଣୀ-ଖ ରେ ଦର୍ଶାଯିବା ପ୍ରକାରେ ହେବ ।

(୩) ଯେଉଁସ୍ଥଳ ସାରଣୀ-କ ବା ସାରଣୀ-ଖ ରେ ଦର୍ଶାଯାଇଥିବା ଏକ ନିର୍ବାଚନ ମଣ୍ଡଳୀର ନାମ ପାର୍ଶ୍ୱରେ '(ଏସ୍.ସି.)' ବନ୍ଧନୀ ଓ ଅକ୍ଷର ଚିହ୍ନ ରହିଛି, ସେହି ନିର୍ବାଚନ ମଣ୍ଡଳୀର ଆସନ, ଅନୁସୂଚିତ ଜାତି ନିମନ୍ତେ ସଂରକ୍ଷିତ ରହିବ ।

(୪) ଯେଉଁସ୍ଥଳେ ସାରଣୀ-କ ବା ସାରଣୀ-ଖରେ ଦର୍ଶାଯାଇଥିବା ଏକ ନିର୍ବାଚନ ମଣ୍ଡଳୀର ନାମ ପାର୍ଶ୍ୱରେ '(ଏସ୍.ଟି.)' ବନ୍ଧନୀ ଓ ଅକ୍ଷର ଚିହ୍ନ ରହିଛି, ସେ ନିର୍ବାଚନ ମଣ୍ଡଳୀର ଆସନ, ଅନୁସୂଚିତ ଜନଜାତି ନିମନ୍ତେ ସଂରକ୍ଷିତ ରହିବ ।

## ସାରଣୀ-କ

## ବିଧାନସଭା ନିର୍ବାଚନ ମଣ୍ଡଳୀ ଓ ସେଗୁଡ଼ିକର ବିସ୍ତାର

| କ୍ରମିକ ସଂଖ୍ୟା | ନିର୍ବାଚନ ମଣ୍ଡଳୀର ନାମ | ନିର୍ବାଚନ ମଣ୍ଡଳୀର ବିସ୍ତାର |
|---|---|---|
| | | **୧. ଜିଲ୍ଲା - ବରଗଡ଼** |
| ୧. | ପଦ୍ମପୁର | ୧. ଝାରବନ୍ଧ ବ୍ଲକ, ୨. ପାଇକମାଳ ବ୍ଲକ, ୩. ରାଜବୋରାସମ୍ବର ବ୍ଲକ, ୪. ପଦ୍ମପୁର (ଏନ୍.ଏ.ସି.) |
| ୨. | ବିଜେପୁର | ୧. ଗାଇସିଲେଟ ବ୍ଲକ, ୨. ବିଜେପୁର ବ୍ଲକ, ୩. ବରପାଲି ବ୍ଲକର ପାଟକୁଲୁଣ୍ଡା, ରେମତା, ବନ୍ଧପାଲି, ଖେମଶରା, କାଇଁଶିର, ସତଲମା, ବାରଗୁଡ଼ା, ମହଦା, ତିଲେଇମାଳ, ଆଗଲପୁର, ଭଟିଗାଁ, ରକ୍‌ସା, ଗୋପେଇପାଲି, ତିନିକାନି, ତୁଲଣ୍ଡି ଓ କୁମ୍ଭାରୀ ଗ୍ରାମପଞ୍ଚାୟତ, ୪. ବରପାଲି (ଏନ୍.ଏ.ସି.) |
| ୩. | ବରଗଡ଼ | ୧. ବରଗଡ଼ ବ୍ଲକ, ୨. ବରପାଲି ବ୍ଲକର କଟାପାଲି, ମହୁଲପାଲି, କୁଶନପୁରୀ, ଲେଣ୍ଡା, ବାଗବାଡ଼ି, ବରମକେଲା ଓ କନବାର ଗ୍ରାମପଞ୍ଚାୟତ, ୩. ବରଗଡ଼ (ପୌରପରିଷଦ) |
| ୪. | ଅତାବିରା (ଏସ୍.ସି.) | ୧. ଅତାବିରା ବ୍ଲକ, ୨. ଭେଡ଼େନ ବ୍ଲକ |

| | | |
|---|---|---|
| ୫. | ଭଟଲି | ୧. ସୋହେଲା ବ୍ଲକ, ୨. ଭଟଲି ବ୍ଲକ, ୩. ଆମ୍ଭାଭୋନା ବ୍ଲକ |

**୨. ଜିଲ୍ଲା - ଝାରସୁଗୁଡ଼ା**

| | | |
|---|---|---|
| ୬. | ବ୍ରଜରାଜନଗର | ୧. ଲଖନପୁର ବ୍ଲକ, ୨. ବେଲପାହାଡ଼ (ଏନ୍.ଏ.ସି.), ୩. ବ୍ରଜରାଜନଗର (ପୌରପରିଷଦ), ୪. ଝାରସୁଗୁଡ଼ା ବ୍ଲକର ଚାନ୍ଦନୀମାଳ, ଗୌରମାଳ, ଲୋଇସିଂ, ରାଜପୁର ଓ କୁଦୋପାଲି ଗ୍ରାମପଞ୍ଚାୟତ |
| ୭. | ଝାରସୁଗୁଡ଼ା | ୧. ଝାରସୁଗୁଡ଼ା ବ୍ଲକର ବଡ଼ମାଳ, ଦଲକି, ଦୁର୍ଲଗା, ହଂ.କଟାପାଲି, ହିର୍ମା, ଜମେରା, କାଡିକେଲା, ମଲଦା, ମରାକୁଟା, ପଡ୍ରାପାଲି, ଶ୍ରୀପୁରା ଓ ତାଲପଟିଆ ଗ୍ରାମପଞ୍ଚାୟତ, ୨. କିର୍ମିରା ବ୍ଲକ, ୩. ଲଇକେରା ବ୍ଲକ, ୪. କୋଲାବିରା ବ୍ଲକ, ୫. ଝାରସୁଗୁଡ଼ା (ପୌରପରିଷଦ) |

**୩. ଜିଲ୍ଲା - ସୁନ୍ଦରଗଡ଼**

| | | |
|---|---|---|
| ୮. | ତଳସରା (ଏସ୍.ଟି.) | ୧. ସବ୍ଡେଗା ବ୍ଲକ, ୨. ବାଲିଶଙ୍କରା ବ୍ଲକ, ୩. ଲେଫ୍ରିପଡ଼ା ବ୍ଲକର ଅଲାପକା, ଡୁମାବାହାଲ, ଗିରିଙ୍ଗକେଲା, ଗୁଣ୍ଡିଆଡିହି, ହୁରମେଇ, କୁଲାବିରା, ଲେଫ୍ରିପଡ଼ା, ମସାବିରା, ରାଜବାହାଲ ଓ ସରଫଗଡ଼ ଗ୍ରାମପଞ୍ଚାୟତ, ୪. ବଡ଼ଗାଁ ବ୍ଲକ |
| ୯. | ସୁନ୍ଦରଗଡ଼ (ଏସ୍.ଟି.) | ୧. ଟାଙ୍ଗରପାଲି ବ୍ଲକ, ୨. ହେମଗିରି ବ୍ଲକ, ୩. ଲେଫ୍ରିପଡ଼ା ବ୍ଲକର ବଡ଼ବଙ୍ଗା, ଛଟେନପାଲି, ଦର୍ଲିପାଲି, ଝୁରିମାଲ, ରାଏବଗା, ରାଏଡିହି ଓ ସର୍ଗିପାଲି ଗ୍ରାମପଞ୍ଚାୟତ, ୪. ସୁନ୍ଦରଗଡ଼ ବ୍ଲକ, ୫. ସୁନ୍ଦରଗଡ଼ (ପୌରପରିଷଦ) |
| ୧୦. | ବୀରମିତ୍ରପୁର (ଏସ୍.ଟି.) | ୧. କୁଆଁରମୁଣ୍ଡା ବ୍ଲକ, ୨. ନୁଆଗାଁ ବ୍ଲକ, ୩. ବୀରମିତ୍ରପୁର (ପୌରପରିଷଦ), ୪. ବିଶ୍ରା ବ୍ଲକ (କୁଲୁଙ୍ଗା ଓ.ଜି. ଯଥା- ଜଗଦା ଓ ଝିରିପାଣି ଗ୍ରାମପଞ୍ଚାୟତ ବ୍ୟତୀତ) |
| ୧୧. | ରଘୁନାଥ ପାଲି (ଏସ୍.ସି.) | ୧. ଲାଠିକଟା ବ୍ଲକର ହାତୀବନ୍ଧା, ଲାଠିକଟା, ମୁଣ୍ଡାଜୋର, ରାମଜୋଡ଼ି, ସୁଇଡିହି ଓ ଜଲଦା ଗ୍ରାମପଞ୍ଚାୟତ, ୨. ରାଉରକେଲା ଟାଉନସିପ୍ |
| ୧୨. | ରାଉରକେଲା | ୧. ରାଉରକେଲା (ପୌରପରିଷଦ), ୨. ବିଶ୍ରା ବ୍ଲକର କୁଲୁଙ୍ଗା ଓ.ଜି. (ଜଗଦା ଓ ଝିରିପାଣି ଗ୍ରାମପଞ୍ଚାୟତ) |
| ୧୩. | ରାଜଗାଙ୍ଗପୁର (ଏସ୍.ଟି.) | ୧. ରାଜଗାଙ୍ଗପୁର ବ୍ଲକ, ୨. ରାଜଗାଙ୍ଗପୁର (ପୌରପରିଷଦ, ଓ.ସି.ଏଲ୍. ଇଣ୍ଡଷ୍ଟ୍ରିୟାଲ ଟାଉନସିପ୍ ସହିତ), ୩. ଲାଠିକଟା ବ୍ଲକର ବଡ଼ ଦଲକି, ବୀରଡ଼ା, ବୀରକେରା, ଟାଇଁସର, ଝରତରଙ୍ଗ, ଚିକଟମାଟି, ଗର୍ଜନ, ବଲଣ୍ଡା, କଲୁଙ୍ଗା ଓ ଜଡ଼ାକୁଦର ଗ୍ରାମପଞ୍ଚାୟତ, ୪. କୁତ୍ରା ବ୍ଲକ |
| ୧୪. | ବଣାଇ (ଏସ୍.ଟି.) | ୧. ଗୁରୁଣ୍ଡିଆ ବ୍ଲକ, ୨. ବଣାଇଗଡ଼ ବ୍ଲକ, ୩. ଲହୁଣିପଡ଼ା ବ୍ଲକ, ୪. କୋଇଡ଼ା ବ୍ଲକ |

**୪. ଜିଲ୍ଲା - ସମ୍ବଲପୁର**

| | | |
|---|---|---|
| ୧୫. | କୁଚିଣ୍ଡା (ଏସ୍.ଟି.) | ୧. ବାମରା ବ୍ଲକ, ୨. କୁଚିଣ୍ଡା ବ୍ଲକ, ୩. କୁଚିଣ୍ଡା (ଏନ୍.ଏ.ସି.), ୪. ଜମନକିରା ବ୍ଲକ |

| | | |
|---|---|---|
| ୧୬. | ରେଙ୍ଗାଲି (ଏସ୍.ସି.) | ୧. ରେଙ୍ଗାଲି ବ୍ଲକ, ୨. ଧନକଉଡ଼ା ବ୍ଲକ, ୩. ମାନେଶ୍ୱର ବ୍ଲକର ଗୁଣ୍ଡେରପୁର, ବଡେମୁରା, ଭୀକମପୁର, ମାନେଶ୍ୱର, ମଠପାଲି, ନୁଆଁତିହୁରା, ପରମାଣପୁର, ସିନ୍ଦୂରପଙ୍କ, ତବଲା ଓ ଠେମରା ଗ୍ରାମପଞ୍ଚାୟତ |
| ୧୭. | ସମ୍ବଲପୁର | ୧. ସମ୍ବଲପୁର (ପୌରପରିଷଦ), ୨. ହୀରାକୁଦ (ଏନ୍.ଏ.ସି.), ୩. ବୁର୍ଲା (ଏନ୍.ଏ.ସି.) |
| ୧୮. | ରେଢ଼ାଖୋଲ | ୧. ଜୁଜୁମରା ବ୍ଲକ, ୨. ରେଢ଼ାଖୋଲ ବ୍ଲକ, ୩. ନାକଟିଦେଉଳ ବ୍ଲକ, ୪. ରେଢ଼ାଖୋଲ (ଏନ୍.ଏ.ସି.), ୫. ମାନେଶ୍ୱର ବ୍ଲକର ଦେଓଗାଁ, ଡକରା, ଧମା, ହୁମା, ବରଗାଁ, ସାହସପୁର ଓ ବଦୁଆପାଲି ଗ୍ରାମପଞ୍ଚାୟତ |

**୫. ଜିଲ୍ଲା - ଦେଓଗଡ଼**

| | | |
|---|---|---|
| ୧୯. | ଦେବଗଡ଼ | ୧. ତିଲେଇବଣି ବ୍ଲକ, ୨. ବାରକୋଟ ବ୍ଲକ, ୩. ରିଆମାଳ ବ୍ଲକ, ୪. ଦେବଗଡ଼ (ପୌରପରିଷଦ) |

**୬. ଜିଲ୍ଲା - କେନ୍ଦୁଝର**

| | | |
|---|---|---|
| ୨୦. | ତେଲକୋଇ (ଏସ୍.ଟି.) | ୧. ହରିଚନ୍ଦନପୁର ବ୍ଲକ, ୨. ତେଲକୋଇ ବ୍ଲକ, ୩. ବାଂଶପାଳ ବ୍ଲକର ବାଂଶପାଳ, ବାରହାଗଡ଼, ବାୟାକୁମୁଟିଆ, ଗୋନାସିକା, ଯାତ୍ରା, କଲଣ୍ଡା, କରଙ୍ଗାଡିହି, କୁଅଁର, ନୟାକୋଟ, ଫୁଲଝର, ସାହାରପୁର, ସିଂଙ୍ଗପୁର, ତଳକାଦକଳା, ଟଣ, ତରମାକାନ୍ତ ଓ ଉପର ରାଇଗୋଡ଼ା ଗ୍ରାମପଞ୍ଚାୟତ |
| ୨୧. | ଘସିପୁରା | ୧. ଘସିପୁରା ବ୍ଲକ, ୨. ଘଟଗାଁ ବ୍ଲକ, ୩. ଆନନ୍ଦପୁର ବ୍ଲକର ଧକୋଠା ଓ କୋଳିମାଟି ଗ୍ରାମପଞ୍ଚାୟତ |
| ୨୨. | ଆନନ୍ଦପୁର (ଏସ୍.ସି.) | ୧. ଆନନ୍ଦପୁର ବ୍ଲକର ବାଇଲୋ, ବାଉଁଶଗଡ଼, ବେଲବାହାଲି, ଗୟଳମୁଣ୍ଡା, ହରିଡ଼ାପାଳ, ଜଳସୁଆଁ, କଣ୍ଟିପାଳ, କାଠକଟା, କୋଡ଼ପଡ଼ା, ମନୋହରପୁର, ପଣସଡିହା, ପଞ୍ଚୁପଲ୍ଲୀ ଶାଳବଣି ଓ ତରତରା ଗ୍ରାମପଞ୍ଚାୟତ, ୨. ଆନନ୍ଦପୁର (ପୌରପରିଷଦ), ୩. ହାଟଡିହି ବ୍ଲକ |
| ୨୩. | ପାଟଣା (ଏସ୍.ଟି.) | ୧. ଝୁମ୍ପୁରା ବ୍ଲକର ଅସନପାଟ, ଖୁଣ୍ଟାପଡ଼ା, ବଡ଼ଡୁମୁରିଆ, ବଡ଼ନେଉଳି, ବାରିଆ, ଧନୁର୍ଜୟପୁର, ଗୁଣ୍ଡୁଣିଆ, ଟୁକୁଡ଼ିହା, ଉଖୁଣ୍ଡା ଓ ଚଉଠିଆ ଗ୍ରାମପଞ୍ଚାୟତ, ୨. ଚମ୍ପୁଆ ବ୍ଲକର ଜଜପଶି, ଜାଲି, ସଡ଼ଙ୍ଗି, ଜ୍ୟୋତିପୁର, ଭୂଇଁପୁର ଓ ପର୍ଶଳା ଗ୍ରାମପଞ୍ଚାୟତ, ୩. ପାଟଣା ବ୍ଲକ, ୪. ସାହାରପଡ଼ା ବ୍ଲକ |
| ୨୪. | କେନ୍ଦୁଝର (ଏସ୍.ଟି.) | ୧. ଝୁମ୍ପୁରା ବ୍ଲକର ଅର୍ଶଳା, ବାଲିବନ୍ଧ, ଝୁମ୍ପୁରା, ଖେଣ୍ଡରା, କୁଟୁଗାଁ, ନହବେଡ଼ା, ନାରଦପୁର, ନିଶ୍ଚିନ୍ତପୁର, ବସନ୍ତପୁର, ଗୁମୁରା, ମାଲଦା ଓ ନୟାଗଡ଼ ଗ୍ରାମପଞ୍ଚାୟତ, ୨. ବାଂଶପାଳ ବ୍ଲକର କୋଡ଼ିପଶା, ଶୁଆକାଟି, ତଳଚମ୍ପେଇ, ତଳକାଇଂଶାରୀ ଓ କୁମୁଣ୍ଡି ଗ୍ରାମପଞ୍ଚାୟତ, ୩. କେନ୍ଦୁଝର ବ୍ଲକ, ୪. କେନ୍ଦୁଝର (ପୌରପରିଷଦ) |
| ୨୫. | ଚମ୍ପୁଆ | ୧. ଯୋଡ଼ା ବ୍ଲକ, ୨. ଯୋଡ଼ା (ପୌରପରିଷଦ), ୩. ବଡ଼ବିଲ (ପୌରପରିଷଦ), ୪. ଚମ୍ପୁଆ ବ୍ଲକର କୋଦଗାଡ଼ିଆ, ଜାମୁଦ ଲକ, ରଜିଆ, କାଳିକାପ୍ରସାଦ, ରିମୁଳି, |

| | | |
|---|---|---|
| | | ବଡ଼ନଇ, ସରେଇ, ଚମ୍ପୁଆ, କୁଟାରୀପଶି, ସୁନାପଶି, କରଞ୍ଜିଆ, ରଙ୍ଗମାଟିଆ, ଉଢବାଲି, ଭଣ୍ଡା, କାଶିପାଳ, ପଡୁଆ ଓ ଚନ୍ଦ୍ରଶେଖରପୁର ଗ୍ରାମପଞ୍ଚାୟତ |
| | | **୭. ଜିଲ୍ଲା - ମୟୂରଭଞ୍ଜ** |
| ୨୬. | ଯଶିପୁର (ଏସ୍.ଟି.) | ୧. ଯଶିପୁର ବ୍ଲକ, ୨. ରରୁଆଁ ବ୍ଲକ, ୩. ଶୁକ୍ରୁଲୀ ବ୍ଲକ, ୪. କୁସୁମୀ ବ୍ଲକର ବଡ଼ହାତନାବେଡ଼ା, ଚୁଆପାଣି, ଧାଙ୍ଗିଡ଼ିମୁଡ଼ା, ହାଟବାଦଡ଼ା, ଯୋରଦା, ଝିପାବନ୍ଧ, ତଳାପାଡି, ତଳକପୋଖରୀ ଓ ଉପରବେଡ଼ା ଗ୍ରାମପଞ୍ଚାୟତ |
| ୨୭. | ସାରସକଣା (ଏସ୍.ଟି.) | ୧. ବିଜାତଳା ବ୍ଲକ, ୨. କୁସୁମୀ ବ୍ଲକର ଜୟପୁର, କୁସୁମୀ ଓ ମୟୁରଦର ଗ୍ରାମପଞ୍ଚାୟତ, ୩. ସାରସକଣା ବ୍ଲକ, ୪. ବିଶୋଇ ବ୍ଲକ |
| ୨୮. | ରାଇରଙ୍ଗପୁର (ଏସ୍.ଟି.) | ୧. ତିରିଙ୍ଗି ବ୍ଲକ, ୨. ବହଳଦା ବ୍ଲକ, ୩. ଯାମଦା ବ୍ଲକ, ୪. ରାଇରଙ୍ଗପୁର ବ୍ଲକ, ୫. ରାଇରଙ୍ଗପୁର (ଏନ୍.ଏ.ସି.) |
| ୨୯. | ବାଙ୍ଗିରିପୋଷୀ (ଏସ୍.ଟି.) | ୧. ଶାମାଖୁଣ୍ଟା ବ୍ଲକ, ୨. ବାଙ୍ଗିରିପୋଷୀ ବ୍ଲକ, ୩. କୁଳିଅଣା ବ୍ଲକ |
| ୩୦. | କରଞ୍ଜିଆ (ଏସ୍.ଟି.) | ୧. କରଞ୍ଜିଆ ବ୍ଲକ, ୨. ଠାକୁରମୁଣ୍ଡା ବ୍ଲକ, ୩. କପ୍ତିପଦା ବ୍ଲକର ପଦ୍ମପୋଖରୀ, ରାମଚନ୍ଦ୍ରପୁର, ଲାବଣ୍ୟଦେଇପୁର, ଦେଓ୍ୱାନବାହାଲି, ରାଣୀପୋଖରୀ, ଶରତ, ନୋଟ, ସରଡ଼ିହା ଓ କଳମଗଡ଼ିଆ ଗ୍ରାମପଞ୍ଚାୟତ, ୪. କରଞ୍ଜିଆ (ଏନ୍.ଏ.ସି.) |
| ୩୧. | ଉଦଳା (ଏସ୍.ଟି.) | ୧. ଉଦଳା ବ୍ଲକ, ୨. ଗୋପବନ୍ଧୁନଗର ବ୍ଲକ, ୩. ଉଦଳା (ଏନ୍.ଏ.ସି.), ୪. କପ୍ତିପଦା ବ୍ଲକର ବଡ଼ବିଶୋଳ, ବଡ଼ଗୁଡୁଗୁଡ଼ିଆ, ବଡ଼ଖଲାଡ଼ି, ଚକ୍ରଧରପୁର, ଦେବଳା, ଜଡ଼ିଦା, ଜାମବଣୀ, ଜୟନ୍ତିପଟା-ସାମିଲ ଜାମଡିହା, ଝିଙ୍କପଦା, କପ୍ତିପଦା, କୋଲିଓଳମ, ମଝିଗଡ଼ିଆ, ମାଙ୍କଡ଼ପଡ଼ା, ନୁଦଡ଼ିହା, ପେଡ଼ାଗଡ଼ି, ପିଙ୍ଗୁ ଓ ଶାଳଚୁଆ ଗ୍ରାମପଞ୍ଚାୟତ |
| ୩୨. | ବଡ଼ସାହି (ଏସ୍.ସି.) | ୧. ବଡ଼ସାହି ବ୍ଲକର ବଡ଼ସାହି, ବଳଭଦ୍ରପୁର, ଭୀମ୍‌ଦା, ବିରେଶ୍ୱରପୁର, ଚନ୍ଦନପୁର, ଛେଳିଆ-କ, ଦେଉଳିଆ, ଦୁର୍ଗାପୁର, ଯୋଗୀ ନୂଆଗାଁ, କେନ୍ଦୁଡ଼ିହା, କୋଚିଲାଖୁଣ୍ଟା, ମାଧପୁର, ମାନଗୋବିନ୍ଦପୁର, ମାଣଡ୍ରୀ, ପଟିସାରୀ, ପାଉଁଶିଆ, ଶାଳଗାଁ, ଶିଆଳୀଘାଟୀ, ସୁହାଗପୁର, ତାଳପଦା ଓ ପ୍ରତାପପୁର ଗ୍ରାମପଞ୍ଚାୟତ, ୨. ବେତନଟୀ ବ୍ଲକ |
| ୩୩. | ବାରିପଦା (ଏସ୍.ଟି.) | ୧. ଖୁଣ୍ଟା ବ୍ଲକ, ୨. ବାରିପଦା ବ୍ଲକ, ୩. ବାରିପଦା (ପୌରପରିଷଦ), ୪. ବଡ଼ସାହି ବ୍ଲକର ଗୁଡ଼ିଆଲବନ୍ଧ, ଯଦୁନାଥପୁର, ଜାରକାଣି, ଖାନୁଆ, ନାଉପାଳ, ପୂର୍ଣ୍ଣଚନ୍ଦ୍ରପୁର, ସାନକେରକ, ଟଙ୍ଗାଶୋଳ ଓ ଉଠାଣି ନୂଆଗାଁ ଗ୍ରାମପଞ୍ଚାୟତ |
| ୩୪. | ମୋରଡ଼ା | ୧. ଶୁଳିଆପଦା ବ୍ଲକ, ୨. ରାସଗୋବିନ୍ଦପୁର ବ୍ଲକ, ୩. ମୋରଡ଼ା ବ୍ଲକ |
| | | **୮. ଜିଲ୍ଲା - ବାଲେଶ୍ୱର** |
| ୩୫. | ଜଳେଶ୍ୱର | ୧. ଜଳେଶ୍ୱର ବ୍ଲକ, ୨. ବସ୍ତା ବ୍ଲକର ନଟକଟା, ପୁରୁଷୋତ୍ତମପୁର, କୁଳିଦା, ସନ୍ତୋଷପୁର, ରଘୁନାଥପୁର, ଚୋରମରା, ସିଙ୍ଗଲା, ପାଉଁଶକୁଲି, ତାଡ଼ଦା, ପୁଟୁରା ଓ ନାବରା ଗ୍ରାମପଞ୍ଚାୟତ, ୩. ଜଳେଶ୍ୱର (ଏନ୍.ଏ.ସି.) |
| ୩୬. | ଭୋଗରାଇ | ୧. ଭୋଗରାଇ ବ୍ଲକ |

| | | |
|---|---|---|
| ୩୭. | ବସ୍ତା | ୧. ବାଲିଆପାଳ ବ୍ଲକ, ୨. ବସ୍ତା ବ୍ଲକର ମୁକୁଳିଶି, ବ୍ରାହ୍ମଣଦା, ସଦାନନ୍ଦପୁର, ବାହାର୍ଦ୍ଧା, ରାଉତପଡ଼ା, ମଥାନି, ସାହାଡ଼ା, ନାଇକୁଡ଼ି, ଗଡ଼ପଦା, ଦରଡ଼ା ଓ ଇଢ଼ଦା ଗ୍ରାମପଞ୍ଚାୟତ |
| ୩୮. | ବାଲେଶ୍ୱର | ୧. ବାଲେଶ୍ୱର ବ୍ଲକର କସିପଦା, ରସଲପୁର, ଶ୍ରୀରାମପୁର, କଷାଫଳ, ସାର୍ଥା, ବାହାବଳପୁର, ଛାନୁଆ, ହଳଦିପଦା, ଓଳଂ ଦାସାରଗାଁ, ଓଡ଼ଙ୍ଗୀ, ନଗ୍ରମ, ବୁଆଁଳ, ସିନ୍ଧିଆ, ଗୋପୀନାଥପୁର, ପରିକ୍ଷୀ, ପାତ୍ରପଡ଼ା, କୁରାଡ଼ିହା ଓ ଶ୍ରୀକଣା ଗ୍ରାମପଞ୍ଚାୟତ, ୨. ବାଲେଶ୍ୱର (ପୌରପରିଷଦ) |
| ୩୯. | ରେମୁଣା (ଏସ୍.ସି.) | ୧. ରେମୁଣା ବ୍ଲକ, ୨. ବାଲେଶ୍ୱର ବ୍ଲକର ରଣସାହି, ଗୁଡୁ, ପଦ୍ମପୁର, ସାରଗାଁ, ଗେଙ୍ଗୁଟି, ଶାସଂଗ, ରସାଳପୁର, ଜୟଦେବକସବା ଓ ହିଡ଼ିଗାଁ ଗ୍ରାମପଞ୍ଚାୟତ |
| ୪୦. | ନୀଳଗିରି | ୧. ନୀଳଗିରି ବ୍ଲକ, ୨. ଔପଦା ବ୍ଲକ, ୩. ବାହାନଗା ବ୍ଲକର ଚକଜଗନ୍ନାଥପୁର, କସବାଜୟପୁର, ଖନ୍ତାପଡ଼ା, ପଣପଣା ଓ ପଥରପେଣ୍ଟ ଗ୍ରାମପଞ୍ଚାୟତ, ୪. ନୀଳଗିରି (ଏନ୍.ଏ.ସି.) |
| ୪୧. | ସୋରୋ (ଏସ୍.ସି.) | ୧. ସୋରୋ ବ୍ଲକ, ୨. ବାହାନଗା ବ୍ଲକର ଅଞ୍ଜି, ଆରୁହାବାଡ଼, ଅଭଣା, ବାହାନଗା, ବରିପଦା, ବିଷ୍ଣୁପୁର, ଚିଡ଼ୋଳ, ଦାଣ୍ଡହରିପୁର, ଗୋପାଳପୁର, କଲ୍ୟାଣି, ଖରାସାହାପୁର, କୋଚିଆକୋଇଲି, କୁରୁଡ଼ା, ସାହାସପୁରା, ସାଉଡ୍ ଓ ତାଳକୁରୁଣିଆ ଗ୍ରାମପଞ୍ଚାୟତ, ୩. ସୋରୋ (ଏନ୍.ଏ.ସି.) |
| ୪୨. | ସିମୁଳିଆ | ୧. ଖଇରା ବ୍ଲକ, ୨. ସିମୁଳିଆ ବ୍ଲକ |

## ୯. ଜିଲ୍ଲା - ଭଦ୍ରକ

| | | |
|---|---|---|
| ୪୩. | ଭଣ୍ଡାରିପୋଖରୀ | ୧. ବନ୍ତ ବ୍ଲକ, ୨. ଭଣ୍ଡାରିପୋଖରୀ ବ୍ଲକ |
| ୪୪. | ଭଦ୍ରକ | ୧. ଭଦ୍ରକ ବ୍ଲକ, ୨. ଭଦ୍ରକ (ପୌରପରିଷଦ) |
| ୪୫. | ବାସୁଦେବପୁର | ୧. ବାସୁଦେବପୁର ବ୍ଲକ, ୨. ତିହିଡ଼ି ବ୍ଲକର ଭାଟପଡ଼ା, ସୟା ବାହାବଳପୁର, ସିନ୍ଦୋଳ, କୋହ୍ଲ, ମୁକୁନ୍ଦପୁର ଓ ମହରମପୁର ଗ୍ରାମପଞ୍ଚାୟତ, ୩. ବାସୁଦେବପୁର (ଏନ୍.ଏ.ସି.) |
| ୪୬. | ଧାମନଗର (ଏସ୍.ସି.) | ୧. ଧାମନଗର ବ୍ଲକ, ୨. ତିହିଡ଼ି ବ୍ଲକର ପାଳିଆବିନ୍ଧା, ଅଚକ, ଦୋଳସାହି, ଗୁଆମାଳ, ତାଳପଦା, କୁବେରା, ବିଲଣା, ବାରୋ, ବୋଡ଼କ, କାଁପଡ଼ା, ଶ୍ୟାମସୁନ୍ଦରପୁର ଓ ତଳଗୋପବିନ୍ଧା ଗ୍ରାମପଞ୍ଚାୟତ |
| ୪୭. | ଚାନ୍ଦବାଲି | ୧. ଚାନ୍ଦବାଲି ବ୍ଲକ, ୨. ତିହିଡ଼ି ବ୍ଲକର ଦୌଲତପୁର, ବାମନବିନ୍ଧା, ଜାମଯୋଡ଼ି, ରାଜନଗର, ବାରସର, ସାହାପୁର ଓ ଗୋବିନ୍ଦପୁର ଗ୍ରାମପଞ୍ଚାୟତ |

## ୧୦. ଜିଲ୍ଲା - ଯାଜପୁର

| | | |
|---|---|---|
| ୪୮. | ବିଞ୍ଝାରପୁର (ଏସ୍.ସି.) | ୧. ବିଞ୍ଝାରପୁର ବ୍ଲକ, ୨. ଦଶରଥପୁର ବ୍ଲକର ବିରିପଟା, ଅସନପୁର, ପାଲଟପୁର, ଖାନନଗର, କମାରଡ଼ିହି, ନିଜାମପୁର, ଦଉପୁର, ବିହାରୀ, ଗ୍ରାମନନ୍ଦୀପୁର, ଥାଲକୁଡ଼ି, କଇଁଆ ଓ ଚଷାଖଣ୍ଡ ଗ୍ରାମପଞ୍ଚାୟତ |
| ୪୯. | ବରୀ | ୧. ଯାଜପୁର ବ୍ଲକର ବଡ଼ସୁଆର, ଛତିଶିଦେବିଲ, ଏରବାଙ୍କ, ଝାଲପଡ଼ା, ସାନସୁଆର, ରୁଦ୍ରପୁର, ସାହାସପୁର ଓ ସୁଜନପୁର ଗ୍ରାମପଞ୍ଚାୟତ, ୨. ରସୁଲପୁର ବ୍ଲକର ଅତଲାପୁର, |

| | | |
|---|---|---|
| | | ସାମନ୍ତରାପୁର, ରାଉତରାପୁର, ପ୍ରଥମାଖଣ୍ଡି ରାଜେନ୍ଦ୍ରପୁର, ଅର୍ଥଙ୍ଗା, ମଙ୍ଗରାଜପୁର, ବ୍ରହ୍ମବରଦା, ବନ୍ଧଡ଼ିହ ଓ ମହେଶ୍ୱରପୁର ଗ୍ରାମପଞ୍ଚାୟତ, ୩. ବରୀ ବ୍ଲକ |
| ୫୦. | ବଡ଼ଚଣା | ୧. ବଡ଼ଚଣା ବ୍ଲକ |
| ୫୧. | ଧର୍ମଶାଳା | ୧. ଧର୍ମଶାଳା ବ୍ଲକ, ୨. ରସୁଲପୁର ବ୍ଲକର ଓଡ଼ିଶୋ, କଳଣ, ସିଂହାପୁର, ଶ୍ରୀବନ୍ତପୁର, ଯାବରା, ନଠୁଆବର, ରାହାମ୍ଭା, ବାରବାଟୀ ଓ ରସୁଲପୁର ଗ୍ରାମପଞ୍ଚାୟତ |
| ୫୨. | ଯାଜପୁର | ୧. ଯାଜପୁର ବ୍ଲକର ବାସୁଦେବପୁର, ବେରୁଦା, ଭୁବନେଶ୍ୱରପୁର, ଭୂଇଁପୁର, ବିଚିତ୍ରପୁର, ଚଇନିପୁର, ଯାହାନପୁର, ଖଇରାବାଦ, ମାଳଆନ୍ଧପୁର, ମାର୍କଣ୍ଡପୁର, ନାଥସାହି, ପଣସା, ମହେଶ୍ୱରପୁର, ଶ୍ୟାମଦାସପୁର, ସିମିଳିଆ ଓ ଉପରବରୁହାଁ ଗ୍ରାମପଞ୍ଚାୟତ, ୨. ଦଶରଥପୁର ବ୍ଲକର ଦୁଦୁରାଅଣ୍ଡା, ସୁସୁଆ, କନିକାପଡ଼ା, ମଙ୍ଗଳପୁର, ଅକରପଡ଼ା, ଚମ୍ପେଇପାଳ, ଛଚିଣା, ଚିଢ଼ାଳୋ, ଦଶରଥପୁର, ଗୋପାଳପୁର, କସପା, କଟିକଟା, ଖଣ୍ଡରା, ମଲ୍ଲିକାପୁର, ତଳିହା ଓ ତରପଦା ଗ୍ରାମପଞ୍ଚାୟତ, ୩. ଯାଜପୁର (ପୌରପରିଷଦ) |
| ୫୩. | କୋରେଇ | ୧. କୋରେଇ ବ୍ଲକ, ୨. ରସୁଲପୁର ବ୍ଲକର ଭୋଟକା, ଲକ୍ଷ୍ମୀନଗର, ପାହଙ୍ଗା, ବଡ଼କଇଁଚି, ଗନ୍ଧଣ, ଟିକରପଡ଼ା, ବାହାଦଲାପୁର, ନରସିଂହପୁର ଓ ମୁଗୁପାଳ ଗ୍ରାମପଞ୍ଚାୟତ, ୩. ବ୍ୟାସନଗର (ପୌରପରିଷଦ), ୪. ବ୍ୟାସନଗର (ଓ.ଜି.) |
| ୫୪. | ସୁକିନ୍ଦା | ୧. ସୁକିନ୍ଦା ବ୍ଲକ, ୨. ଦାନଗଦୀ ବ୍ଲକ |

## ୧୧. ଜିଲ୍ଲା - ଢେଙ୍କାନାଳ

| | | |
|---|---|---|
| ୫୫. | ଢେଙ୍କାନାଳ | ୧. ଗଁଦିଆ ବ୍ଲକ, ୨. ଢେଙ୍କାନାଳ ବ୍ଲକର ବଳଦିଆ ବନ୍ଧ, ବାଲିଆମ୍ବା, ବେଲଟିକିରି, ଭାଲିଆବୋଲକାଟେଣି, ଭାପୁର, ଚନ୍ଦ୍ରଶେଖରପ୍ରସାଦ, ଧୀରପାଟଣା, ଗୋବିନ୍ଦପୁର, କାଇମାଟି, କାକୁଡ଼ିଭାଗ, କଙ୍କଡ଼ାହାଡ଼, କାଙ୍କଡ଼ପାଳ, ମଧୁସାହୁପାଟଣା, ମଙ୍ଗଳପୁର, ମାଣିପୁର, ନଡ଼ିଆଳି, ନାଗିଆପଶି, ଶଙ୍କରପୁର, ସପ୍ତଶଯ୍ୟା ଓ ତଳବରକୋଟ ଗ୍ରାମପଞ୍ଚାୟତ, ୩. ଢେଙ୍କାନାଳ (ପୌରପରିଷଦ) |
| ୫୬. | ହିନ୍ଦୋଳ (ଏସ୍.ସି.) | ୧. ଓଡ଼ପଡ଼ା ବ୍ଲକ, ୨. ହିନ୍ଦୋଳ ବ୍ଲକ |
| ୫୭. | କାମାକ୍ଷାନଗର | ୧. ଢେଙ୍କାନାଳ ବ୍ଲକର ବାରଦା, ଗେଙ୍ଗୁଟିଆ, ସାଙ୍କୁଲେଇ, ତରଭା, ଚାଉଳିଆ, ସୋଗରପଶି ଓ ବଣସିଂ ଗ୍ରାମପଞ୍ଚାୟତ, ୨. କାମାକ୍ଷାନଗର ବ୍ଲକର ବଡ଼ସୁଆଁଳ, ଜଗନ୍ନାଥପୁର, ଭଇରପୁର, ବାରୁଆଁ (କ), ବାଉଁଶପାଳ, କାନପୁରା, ବାଇସିଙ୍ଗା, ବାଲିଗୋରଡ଼, ମହୁଲପାଳ, କାଦୁଆ, ରାଏନୃସିଂହପୁର, ସୋଗର, ବୁଢ଼ିବିଲି, ବାଙ୍କୁଆଳ ଓ କୋଟଗରା ଗ୍ରାମପଞ୍ଚାୟତ, ୩. ଭୁବନ ବ୍ଲକ, ୪. ଭୁବନ (ଏନ୍.ଏ.ସି.), ୫. କାମାକ୍ଷାନଗର (ଏନ୍.ଏ.ସି.) |
| ୫୮. | ପରଜଙ୍ଗ | ୧. କଙ୍କଡ଼ାହାଡ଼ ବ୍ଲକ, ୨. କାମାକ୍ଷାନଗର ବ୍ଲକର କୁସୁମଯୋଡ଼ି, କଣ୍ଡାପାଳ, ତୁମୁସିଙ୍ଗା, କନ୍ତିଓକାଟେଣୀ ଓ କନ୍ତିଓପୁଟସାହି ଗ୍ରାମପଞ୍ଚାୟତ, ୩. ପରଜଙ୍ଗ ବ୍ଲକ |

## ୧୨. ଜିଲ୍ଲା - ଅନୁଗୋଳ

| | | |
|---|---|---|
| ୫୯. | ପାଲଲହଡ଼ା | ୧. ପାଲଲହଡ଼ା ବ୍ଲକ, ୨. କଣିହା ବ୍ଲକର ବାଲିପଶି, କୁଳୁମା, ରେଙ୍ଗାଳି, ସୁଷୁବା, ଅରକିଳି, ଗଣ୍ଡମଳା, ବଜ୍ରକୋଟ, ହନୁମାନପୁର, ଦଳକ, କର୍ଣ୍ଣପାଳ, ପରାବିଲ୍, ବୁରୁକୁନା, କୁଲେଇ, ଡେରଂଗ, କାକୁଡ଼ିଆ, ତାଳପଦା, ବିରୁ, ହରିହରପୁର ଓ ସମଲ ଗ୍ରାମପଞ୍ଚାୟତ |
| ୬୦. | ତାଳଚେର | ୧. ତାଳଚେର ବ୍ଲକ, ୨. ତାଳଚେର (ପୌରପରିଷଦ), ୩. କଣିହାଁ ବ୍ଲକର କଣିହାଁ, କମରେଇ, ବଡ଼ତ୍ରିବିଡ଼ା, ସାନତ୍ରିବିଡ଼ା, ବିଜିଗୋଳ, ବଡ଼ଗୁଣ୍ଡୁରି ଓ ଜରଡ଼ା ଗ୍ରାମପଞ୍ଚାୟତ |
| ୬୧. | ଅନୁଗୋଳ | ୧. ଅନୁଗୋଳ ବ୍ଲକର ଖଲାରି, କାଙ୍ଗୁଲାବେନ୍ତପୁର, ଅଙ୍ଗାରବନ୍ଧ, ବଡ଼କେରା, ରନ୍ତଲେଇ, ଛେଳିଆପଡ଼ା, ବାଲୁଅକଟା, କୁମୁରସିଂହା, ଇଂକର ବନ୍ଧ, ସଙ୍ଖପୁର, ପୋକତୁଙ୍ଗା, ତଳଗଡ଼, ବାରଗୌଣିଆ, ବସଲା, ବେଡ଼ାଶାସନ, ଖିଣ୍ଡା, ଗଡ଼ତରାସ, ବଡ଼କନ୍ତକୁଳ, ଧୋକୁଟା, ବଲାସିଙ୍ଗା, ବନ୍ତଳା, ନନ୍ଦପୁର ଓ ବଲଙ୍ଗ ଗ୍ରାମପଞ୍ଚାୟତ, ୨. ଅନୁଗୋଳ (ଏନ୍.ଏ.ସି.) ଓ ନାଲକୋ (ସି.ଟି.), ୩. ବଅଁରପାଳ ବ୍ଲକର ବଉଳିଗଡ଼, ଭୋଗବେରଣୀ, ବନ୍ଦା, ବୁଢ଼ାପଙ୍କ, ଫୁଲପଡ଼ା, ଗଡ଼ସନ୍ତରୀ, ଗୋତମରା, ବଳରାମ ପ୍ରସାଦ, କୁଲାଡ଼, ମହିଧରପୁର, ନୂଆହତା, ତଳମୂଳ ଓ ତୁଳସୀପାଳ ଗ୍ରାମପଞ୍ଚାୟତ |
| ୬୨. | ଛେଣ୍ଡିପଦା (ଏସ୍.ସି.) | ୧. ଛେଣ୍ଡିପଦା ବ୍ଲକ, ୨. ବଅଁରପାଳ ବ୍ଲକର କାଣ୍ଡସର, ବଡ଼କେରଜାଙ୍ଗ, ଜରାସିଂହା, କଞ୍ଚୁରା, କରଡ଼ାଗାଡ଼ିଆ, କୁକୁଡ଼ାଙ୍ଗ, କୁମୁଣ୍ଡ, କୁରୁଡ଼ୋଳ, ସାକୋସିଂହା, ସାନକେରଜାଙ୍ଗ, ତୁବେ ଓ ସାନ୍ତରାପୁର ଗ୍ରାମପଞ୍ଚାୟତ |
| ୬୩. | ଆଠମଲ୍ଲିକ | ୧. ଅନୁଗୋଳ ବ୍ଲକର ଅନ୍ତୁଳିଆ, ସରଧାପୁର, ମାଟିଆସାହି, ମାଣିକଯୋଡ଼ି, ଜଗନ୍ନାଥପୁର, ଟାଇଁସି, କୋଠଭୂଇଁ, ଟିକରପଡ଼ା ଓ ପୁରୁଣାକୋଟ ଗ୍ରାମପଞ୍ଚାୟତ, ୨. ଆଠମଲ୍ଲିକ ବ୍ଲକ, ୩. କିଶୋରନଗର ବ୍ଲକ, ୪. ଆଠମଲ୍ଲିକ (ଏନ୍.ଏ.ସି.) |

## ୧୩. ଜିଲ୍ଲା - ସୁବର୍ଣ୍ଣପୁର

| | | |
|---|---|---|
| ୬୪. | ବୀରମହାରାଜପୁର (ଏସ୍.ସି.) | ୧. ଉଲୁଣ୍ଡା ବ୍ଲକ, ୨. ବୀରମହାରାଜପୁର ବ୍ଲକ, ୩. ବିନିକା ବ୍ଲକର ବାବୁପାଲି, ବାଙ୍କିଗିର୍ଡ଼ି, ବାଉଁଶୁଣୀ, ଭଣ୍ଡାର, ଚରଦା, କଇଁତରା, ମହାଦେବପାଲି, ମେଘଲା, ସେଲେଡ଼ି, ଶଙ୍କରା, ସିଲାଟି, ସିନ୍ଦୁରପୁର ଓ ସିଙ୍ଗିଝୁବା ଗ୍ରାମପଞ୍ଚାୟତ, ୪. ବିନିକା (ଏନ୍.ଏ.ସି.) |
| ୬୫. | ସୋନପୁର | ୧. ସୋନପୁର ବ୍ଲକ, ୨. ତରଭା ବ୍ଲକ, ୩. ତରଭା (ଏନ୍.ଏ.ସି.), ୪. ସୋନପୁର (ପୌରପରିଷଦ), ୫. ଡୁଙ୍ଗୁରିପାଲି ବ୍ଲକ, ୬. ବିନିକା ବ୍ଲକର ଜୁଲୁଣ୍ଡା ଓ ମହଦା ଗ୍ରାମପଞ୍ଚାୟତ |

## ୧୪. ଜିଲ୍ଲା - ବଲାଙ୍ଗିର

| | | |
|---|---|---|
| ୬୬. | ଲୋଇସିଂହା (ଏସ୍.ସି.) | ୧. ଆଗଲପୁର ବ୍ଲକ, ୨. ଲୋଇସିଂହା ବ୍ଲକ, ୩. ପୁଇଁନ୍ତଳା ବ୍ଲକ |
| ୬୭. | ପାଟଣାଗଡ଼ | ୧. ପାଟଣାଗଡ଼ ବ୍ଲକ, ୨. ଖପ୍ରାଖୋଲ ବ୍ଲକ, ୩. ବେଲପଡ଼ା ବ୍ଲକ, ୪. ପାଟଣାଗଡ଼ (ଏନ୍.ଏ.ସି.) |
| ୬୮. | ବଲାଙ୍ଗିର | ୧. ବଲାଙ୍ଗିର ବ୍ଲକ, ୨. ଦେଓଗାଁ ବ୍ଲକ, ୩. ବଲାଙ୍ଗିର (ପୌରପରିଷଦ) |

| | | |
|---|---|---|
| ୬୯. | ଟିଟିଲାଗଡ଼ | ୧. ଟିଟିଲାଗଡ଼ ବ୍ଲକ, ୨. ସଇଁତଳା ବ୍ଲକ, ୩. ତେନ୍ତୁଲିଖୁଣ୍ଟି (ଗୁଡ଼ଭେଲା) ବ୍ଲକ, ୪. ଟିଟିଲାଗଡ଼ (ଏନ୍.ଏ.ସି.) |
| ୭୦. | କଣ୍ଟାବାଞ୍ଜି | ୧. ତୁରେକେଲା ବ୍ଲକ, ୨. ବଙ୍ଗୋମୁଣ୍ଡା ବ୍ଲକ, ୩. ମୁରିବାହାଲ ବ୍ଲକ, ୪. କଣ୍ଟାବାଞ୍ଜି (ଏନ୍.ଏ.ସି.) |
| | | **୧୫. ଜିଲ୍ଲା - ନୂଆପଡ଼ା** |
| ୭୧. | ନୂଆପଡ଼ା | ୧. ନୂଆପଡ଼ା ବ୍ଲକ, ୨. କୋମନା ବ୍ଲକ, ୩. ଖଡ଼ିଆଳରୋଡ଼ (ଏନ୍.ଏ.ସି.) |
| ୭୨. | ଖଡ଼ିଆଳ | ୧. ବୋଡ଼େନ ବ୍ଲକ, ୨. ସିନାପାଲି ବ୍ଲକ, ୩. ଖଡ଼ିଆଳ ବ୍ଲକ, ୪. ଖଡ଼ିଆଳ (ଏନ୍.ଏ.ସି.) |
| | | **୧୬. ଜିଲ୍ଲା - ନବରଙ୍ଗପୁର** |
| ୭୩. | ଉମରକୋଟ (ଏସ୍.ଟି.) | ୧. ରାଇଘର ବ୍ଲକ, ୨. ଉମରକୋଟ ବ୍ଲକର କୁର୍ସୀ, ବେହେଡ଼ା, କୋପେନା, ବକୋଦା, ମୁର୍ତ୍ତମା, ବୁର୍ଜା, ସୁନାବେଡ଼ା ଓ ସେମଳା ଗ୍ରାମପଞ୍ଚାୟତ, ୩. ଉମରକୋଟ (ଏନ୍.ଏ.ସି.) |
| ୭୪. | ଝରିଗାଁ (ଏସ୍.ଟି.) | ୧. ଚନ୍ଦାହାଣ୍ଡି ବ୍ଲକ, ୨. ଝରିଗାଁ ବ୍ଲକ, ୩. ଉମରକୋଟ ବ୍ଲକର ବଡ଼ଭରଣ୍ଡି, ବଡ଼କୁମାରୀ, ଭାମିନୀ, ବେନୋରା, ସିଙ୍ଗଶାରୀ, ଭଣ୍ଡାରିଗୁଡ଼ା, ଚିକଲପଦର, ହିରାପୁର, ଜାରାଗାଁ ଓ ରାଜପୁର ଗ୍ରାମପଞ୍ଚାୟତ |
| ୭୫. | ନବରଙ୍ଗପୁର (ଏସ୍.ଟି.) | ୧. ତେନ୍ତୁଲିଖୁଣ୍ଟି ବ୍ଲକ, ୨. ନବରଙ୍ଗପୁର ବ୍ଲକ, ୩. ନନ୍ଦାହାଣ୍ଡି ବ୍ଲକ, ୪. ନବରଙ୍ଗପୁର (ପୌରପରିଷଦ), ୫. କୋଷାଗୁମୁଡ଼ା ବ୍ଲକର ମଦେଇଗାଁ, ଚିର୍ମା, ବଡ଼ଆମଡ଼ା, ପଣ୍ଡୁଗୁଡ଼ା, କୋକୋଡ଼ିସେମଳା, ରାଜୋଡ଼ା, ବାମୁଣି, ସାନଆମଡ଼ା, ବିଞ୍ଜିଲି ଓ ଉକିଆପାଲି ଗ୍ରାମପଞ୍ଚାୟତ |
| ୭୬. | ଡାବୁଗାଁ (ଏସ୍.ଟି.) | ୧. ଡାବୁଗାଁ ବ୍ଲକ, ୨. ପାପଡ଼ାହାଣ୍ଡି ବ୍ଲକ, ୩. କୋଷାଗୁମୁଡ଼ା ବ୍ଲକର ଆଟିଗାଁ, ବଡ଼ଗୁମୁଡ଼ା, ବାଲେଗା, ବାଙ୍କୁଲି, ଏମ୍. କେରାଗାଁ, ବୁଟି ମାଝୀସେମଳା, ଏକୋରୀ, କୋଡ଼ିଙ୍ଗା, କୋଷାଗୁମୁଡ଼ା, ମାଝୀଧାନୁଆ, ମୋତିଗାଁ, ସନ୍ତୋଷପୁର, ତାରାଗାଁ ଓ ଟେମେରା ଗ୍ରାମପଞ୍ଚାୟତ |
| | | **୧୭. ଜିଲ୍ଲା - କଳାହାଣ୍ଡି** |
| ୭୭. | ଲାଞ୍ଜିଗଡ଼ (ଏସ୍.ଟି.) | ୧. ଲାଞ୍ଜିଗଡ଼ ବ୍ଲକ, ୨. ଥୁଆମୁଲରାମପୁର ବ୍ଲକ, ୩. ଜୟପାଟଣା ବ୍ଲକର ଅଏଁଲାଭଟା, ବଡ଼କର୍ଲାକୋଟ, ବଡ଼ପୁଜାରୀଗୁଡ଼ା, ବାନେର୍, ଭଇଁରିପାଲି, ଧନସୁଲି, ହିରାପୁର, ଜୟପାଟଣା, କୁଚାଗାଁ, ମଙ୍ଗଳପୁର, ମୁଖିଗୁଡ଼ା, ପାଇକ୍ କେନ୍ଦୁମୁଣ୍ଡି, ପ୍ରତାପପୁର, ରେଙ୍ଗାଲପାଲି, ସର୍ଗିଗୁଡ଼ା ଓ ଉଛଲା ଗ୍ରାମପଞ୍ଚାୟତ, ୪. ଭବାନୀପାଟଣା ବ୍ଲକର ରିଷିଗାଁ, ଦୁଆରଶୁନୀ, ଶଗଡ଼ା, ଯୁଗସାଇପାଟଣା, ଚାଞ୍ଚେର, କୁଟୁରୁଖମାର, ମାଲଗାଁ ଓ ତଳବେଲଗାଁ ଗ୍ରାମପଞ୍ଚାୟତ |
| ୭୮. | ଜୁନାଗଡ଼ | ୧. ଜୁନାଗଡ଼ ବ୍ଲକ, ୨. ଗୋଲମୁଣ୍ଡା ବ୍ଲକ, ୩. ଜୁନାଗଡ଼ (ଏନ୍.ଏ.ସି.) |
| ୭୯. | ଧର୍ମଗଡ଼ | ୧. କୋକସରା ବ୍ଲକ, ୨. ଧର୍ମଗଡ଼ ବ୍ଲକ, ୩. କଲମପୁର ବ୍ଲକ, ୪. ଜୟପାଟଣା ବ୍ଲକର ବାଣ୍ଡିଗାଁ ଓ ରଣମାଳ ଗ୍ରାମପଞ୍ଚାୟତ |

| | | |
|---|---|---|
| ୮୦. | ଭବାନୀପାଟଣା (ଏସ୍.ସି.) | ୧. ଭବାନୀପାଟଣା ବ୍ଲକର ମାଦିଗୁଡ଼ା, ଚହଗାଁ, କର୍ଲାପଡ଼ା, ଛେଲିଆମାଲ, କଲମ, କର୍ଲାଗୁଡ଼ା, ଥୁଆପଦର, ଦାଦପୁର, ଦେପୁର, ଗୁଡ଼ିଆଲି-ପଦର, କାମଠଣା, କୁଲିଆମାଲ, ଗଣ୍ଡ-ବାରଝୋଲା, ମେଦିନିପୁର, ସେଂପୁର, ପାଲିସିଝରଣ, ଉଦେପୁର, ମାଟିଆ ବୋର୍ଡ଼ା, କେନ୍ଦୁପାଟି, ଗୁରୁଜଙ୍ଗ, ବୋରଭଟା, ଡୁମୁରିଆ, ଅର୍ତ୍ତଲ ଓ ପଲନା ଗ୍ରାମପଞ୍ଚାୟତ, ୨. କେସିଙ୍ଗା ବ୍ଲକର ଅଧମୁଣ୍ଡା, ବାଲସି, ବୋରିଆ, ଚାଞ୍ଚେର, ଦେଗାଁ, ଫଟକାମାଳ, ଗାଇଗାଁ, ଗୋକୁଳେଶ୍ୱର, କାଣ୍ଡେଲ, କିକିଆ, କୁଣ୍ଡାବନ୍ଧ, ଲଇତରା, ନାସିଗାଁ, ପାଷ୍ଟିକୁଡ଼ି, ପଥର୍ଲା, ସିରୋଲ ଓ ଉତ୍କେଲା ଗ୍ରାମପଞ୍ଚାୟତ, ୩. ଭବାନୀପାଟଣା (ପୌରପରିଷଦ), ୪. କେସିଙ୍ଗା (ଏନ୍.ଏ.ସି.) |
| ୮୧. | ନର୍ଲା | ୧. କର୍ଲାମୁଣ୍ଡା ବ୍ଲକ, ୨. ମଦନପୁର-ରାମପୁର ବ୍ଲକ, ୩. ନର୍ଲା ବ୍ଲକ, ୪. କେସିଙ୍ଗା ବ୍ଲକର ବେଲଖଣ୍ଡି, ହାତିଖୋଜ, କନ୍ତେସିର, କଶୁପଡ଼ା, ନୁନମାଠ, ପରଲସିଙ୍ଗା, ସିରଜାପାଲି, ତୁଣ୍ଡଲା ଓ ତୁରଲାଖମନ ଗ୍ରାମପଞ୍ଚାୟତ |
| | | **୧୮. ଜିଲ୍ଲା - କନ୍ଧମାଳ** |
| ୮୨. | ବାଲିଗୁଡ଼ା (ଏସ୍.ଟି.) | ୧. ବାଲିଗୁଡ଼ା ବ୍ଲକ, ୨. କ. ନୂଆଗାଁ ବ୍ଲକ, ୩. କୋଟଗଡ଼ ବ୍ଲକ, ୪. ତୁମୁଡ଼ିବନ୍ଧ ବ୍ଲକ |
| ୮୩. | ଘୁ. ଉଦୟଗିରି (ଏସ୍.ଟି.) | ୧. ରାଇକିଆ ବ୍ଲକ, ୨. ଦାରିଙ୍ଗିବାଡ଼ି ବ୍ଲକ, ୩. ଘୁ. ଉଦୟଗିରି ବ୍ଲକ, ୪. ଘୁ. ଉଦୟଗିରି (ଏନ୍.ଏ.ସି.), ୫. ଟିକାବାଲି ବ୍ଲକ |
| ୮୪. | ଫୁଲବାଣୀ (ଏସ୍.ଟି.) | ୧. ଚକାପାଦ ବ୍ଲକ, ୨. ଫୁଲବାଣୀ ବ୍ଲକ, ୩. ଫୁଲବାଣୀ (ଏନ୍.ଏ.ସି.), ୪. ଖଜୁରୀପଡ଼ା ବ୍ଲକ, ୫. ଫିରିଙ୍ଗିଆ ବ୍ଲକ |
| | | **୧୯. ଜିଲ୍ଲା - ବୌଦ୍ଧ** |
| ୮୫. | କଣ୍ଟାମାଳ | ୧. କଣ୍ଟାମାଳ ବ୍ଲକ, ୨. ବୌଦ୍ଧ ବ୍ଲକର ରକ୍ସା, ମନୁପାଲି, ଗୋଛାପଡ଼ା, ବାଉଁଶୁଣୀ, ବହିରା, ତାଳସରଡ଼ା, ମୁଣ୍ଡିପଦର, ଶଗଡ଼ା, ଗୁଣ୍ଡୁଲିଆ ଓ ଅଁଳାପାଲି ଗ୍ରାମପଞ୍ଚାୟତ |
| ୮୬. | ବୌଦ୍ଧ | ୧. ବୌଦ୍ଧ ବ୍ଲକର ତେଲିବନ୍ଧ, ଖୁଣ୍ଟବନ୍ଧ, ମୁରୁଷୁଣ୍ଡି, ବଡ଼ିଗାଁ, ମୁଣ୍ଡାପଡ଼ା, ବଘିଆପଡ଼ା, ବ୍ରାହ୍ମଣୀପାଲି, ଆମ୍ଭଝରୀ, ଟିକରପଡ଼ା, ପଦ୍ମନ୍ପୁର ଓ ଲକ୍ଷ୍ମୀପ୍ରସାଦ ଗ୍ରାମପଞ୍ଚାୟତ, ୨. ହରଭଙ୍ଗା ବ୍ଲକ, ୩. ବୌଦ୍ଧଗଡ଼ (ଏନ୍.ଏ.ସି.) |
| | | **୨୦. ଜିଲ୍ଲା - କଟକ** |
| ୮୭. | ବଡ଼ମ୍ବା | ୧. ନରସିଂହପୁର ବ୍ଲକ, ୨. ବଡ଼ମ୍ବା ବ୍ଲକ |
| ୮୮. | ବାଙ୍କୀ | ୧. ବାଙ୍କୀ ବ୍ଲକ, ୨. ବାଙ୍କୀ-ଡମପଡ଼ା ବ୍ଲକ, ୩. ବାଙ୍କୀ (ଏନ୍.ଏ.ସି.), ୪. ବାରଙ୍ଗ ବ୍ଲକର ନରାଜମାର୍ଥାପୁର, ରାମଦାସପୁର, ମଧୁପୁର, ବେଲଗଛିଆ, ଦାଢ଼ାପାଟଣା, କୁହ୍ମେଇପଡ଼ା, ମୁଣ୍ଡଳି ଓ ଶ୍ରୀବନ୍ତପୁର ଗ୍ରାମପଞ୍ଚାୟତ |
| ୮୯. | ଆଠଗଡ଼ | ୧. ଆଠଗଡ଼ ବ୍ଲକ, ୨. ଟିଗିରିଆ ବ୍ଲକ, ୩. ଟାଙ୍ଗୀ-ଚୌଦ୍ୱାର ବ୍ଲକର କଖଡ଼ି, ଶଙ୍କରପୁର, ବଡ଼ସାମନ୍ତରାପୁର, ମଙ୍ଗରାଜପୁର ଓ ବ୍ରହ୍ମପୁର ଗ୍ରାମପଞ୍ଚାୟତ, ୪. ଆଠଗଡ଼ (ଏନ୍.ଏ.ସି.) |
| ୯୦. | ବାରବାଟୀ-କଟକ | ୧. କଟକ ମହାନଗର ନିଗମର ୱାର୍ଡ଼ ନମ୍ବର ୧ରୁ ୨୪ ଓ ୨୬ |

| | | |
|---|---|---|
| ୯୧. | ଚୌଦ୍ୱାର-କଟକ | ୧. କଟକ ମହାନଗର ନିଗମର ୱାର୍ଡ଼ ନମ୍ବର ୨୫, ୨୭ରୁ ୪୨ ଏବଂ ୪୪ରୁ ୪୫, ୨. ଚାରବାଟିଆ (ସି.ଟି.), ୩. ଚୌଦ୍ୱାର (ଓ.ଜି.), ୬. ଚୌଦ୍ୱାର (ପୌରପରିଷଦ), ୫. ଟାଙ୍ଗୀ-ଚୌଦ୍ୱାର ବ୍ଲକର ନଖରା, କୟଳପଡ଼ା, ଇନ୍ଦ୍ରାଣୀପାଟଣା ଓ ଆଗ୍ରାହାଟ ଗ୍ରାମପଞ୍ଚାୟତ |
| ୯୨. | ନିଆଳି (ଏସ୍.ସି.) | ୧. ବାରଙ୍ଗ ବ୍ଲକର ନଗରୀ, ଉଷୁମା, ଖଲର୍ଦ୍ଧା, କୋରକରା, ସାଇଁଶୋ, କୁରାଙ୍ଗପ୍ରଧାନ, କୁରାଙ୍ଗ ଶାସନ ଓ ହରିଅନ୍ତା ଗ୍ରାମ ପଞ୍ଚାୟତ, ୨. କଣ୍ଟାପଡ଼ା ବ୍ଲକ, ୩. ନିଆଳି ବ୍ଲକ |
| ୯୩. | କଟକ ସଦର (ଏସ୍.ସି.) | ୧. କଟକ ସଦର ବ୍ଲକ, ୨. ନିଶ୍ଚିନ୍ତକୋଇଲି ବ୍ଲକର ସାନ୍ତପୁର, ଇଶାଣିବ୍ରହ୍ମପୁର, ମାଣପୁର, ଜନାର୍ଦ୍ଦନପୁର, ଶିର୍ଲୋ, ବାବୁଜଙ୍ଗ, ଉତ୍ତରକୂଳ, ମଣିଜଙ୍ଗା, ପାଳଦା, ମହମ୍ମଦପୁର, ନେମାଳୋ, ତିଳକଣା, କଳମିଶ୍ରି ଓ ବନ୍ଧୁପୁର ଗ୍ରାମପଞ୍ଚାୟତ, ୩. କଟକ ମହାନଗର ନିଗମର ୱାର୍ଡ଼ ନମ୍ବର ୪୩ ଏବଂ ୪୬ରୁ୪୮. |
| ୯୪. | ସାଲେପୁର | ୧. ସାଲେପୁର ବ୍ଲକ, ୨. ଟାଙ୍ଗୀ-ଚୌଦ୍ୱାର ବ୍ଲକର ଗୋବିନ୍ଦପୁର, ଜରିପଡ଼ା, ହରିଅନ୍ତା, ନପଙ୍ଗ, ଭଟିମୁଣ୍ଡା, କନ୍ହେଇପୁର, ଉଚ୍ଚପଦା, କୋଠସାହି, ଗରୁଡ଼ଗାଁ, ସଫା ଓ ଶାଳଗାଁ ଗ୍ରାମପଞ୍ଚାୟତ |
| ୯୫. | ମାହାଙ୍ଗା | ୧. ମାହାଙ୍ଗା ବ୍ଲକ, ୨. ନିଶ୍ଚିନ୍ତକୋଇଲି ବ୍ଲକର ଫଗୋଳ, ରାମକୃଷ୍ଣପୁର, ଜିଗ୍ନିପୁର, ନିଶ୍ଚିନ୍ତକୋଇଲି, ନରେନ୍ଦ୍ରପୁର, ନଗସପୁର, ଦାଉଦପୁର, ସୁକରପଡ଼ା, ଅଶୁରେଶ୍ୱର, ତରତୋଶାସନ, ଜମରା, ଓରତି, କେଣ୍ଡୋଳ, ବାଲିଆପଦା, କେରିଲୋ, ବୁହାଳ, କେନ୍ଦୁପାଟଣା, ଝାଡ଼େଶ୍ୱରପୁର, ବନ୍ଧକାଟିଆ, ନତକାଇ, କୋଲଣପୁର, କଟିକଟା, କଟରପଡ଼ା, ଜୟରାମପୁର, ବାରଦା ଓ ସରପଡ଼ା ଗ୍ରାମପଞ୍ଚାୟତ |
| ୯୬. | ପାଟକୁରା | ୧. ଡେରାବିଶ ବ୍ଲକ, ୨. ଗରଦପୁର ବ୍ଲକ, ୩. ମାର୍ଶାଘାଇ ବ୍ଲକ, ଜଳପୋକ, କରିଲୋପାଟଣା, ଆଇତିପୁର, ଜମପଡ଼ା, ମେହେନ୍ଦିନଗର ବଛରାଇ ଓ ବନ୍ଧକଟା ଗ୍ରାମପଞ୍ଚାୟତ |
| ୯୭. | କେନ୍ଦ୍ରାପଡ଼ା (ଏସ୍.ସି.) | ୧. କେନ୍ଦ୍ରାପଡ଼ା ବ୍ଲକ, ୨. ପଟ୍ଟାମୁଣ୍ଡାଇ ବ୍ଲକର ଅଳପୁଆ, ତରଡ଼ିପାଳ ପେଣ୍ଠପାଳ, ଅଣ୍ଡରା, ବଲୁରିଆ, ଅମୃତମଣୋହି, ନୀଳକଣ୍ଠପୁର ବାଲିପାଟଣା, ନରସିଂହପୁର, ବଡ଼ମୂଳବସନ୍ତ, ଡିହାପଡ଼ା ଓ ସିଂହଗାଁ ଗ୍ରାମପଞ୍ଚାୟତ, ୩. କେନ୍ଦ୍ରାପଡ଼ା (ପୌରପରିଷଦ) |
| ୯୮. | ଆଳି | ୧. ଆଳି ବ୍ଲକ, ୨. ରାଜକନିକା ବ୍ଲକ |
| ୯୯. | ରାଜନଗର | ୧. ରାଜନଗର ବ୍ଲକ, ୨. ପଟ୍ଟାମୁଣ୍ଡାଇ ବ୍ଲକର ବାଛରା, ଶ୍ରୀରାମପୁର, ଡାମରପୁର, ସଂସାରଫଳ, ଖଣତା, ଓଉପଦା, ଚନ୍ଦନନଗର, ଶାସନ, ଦୋଷିଆ, ଖଡ଼ିଅଣ୍ଟା, ଗଙ୍ଗାରାମପୁର, ଅରଡ଼ପଲ୍ଲି, ସାନଜରିଆ, ବଡ଼ପଡ଼ା, ବିଲିକଣା, ବଡ଼ମୋହନପୁର, ଦିହୁଡ଼ିପୁର ଓ ବଳଭଦ୍ରପୁର ଗ୍ରାମପଞ୍ଚାୟତ, ୩. ପଟ୍ଟାମୁଣ୍ଡାଇ (ଏନ୍.ଏ.ସି.) |
| ୧୦୦. | ମହାକାଳପଡ଼ା | ୧. ମହାକାଳପଡ଼ା ବ୍ଲକ, ୨. ମାର୍ଶାଘାଇ ବ୍ଲକର ଶିଳିପୁର, ଦଶିପୁର, ଦୁମୁକା, ମାର୍ଶାଘାଇ, ଗରଜଙ୍ଗା, ତାଳସଙ୍ଗା, ପରକୁଳା, ଆଖୁଆଦକ୍ଷିଣି, ରାଘବପୁର, ଅନ୍ତେଇ ବଟିରା, ବେରୁହାଁ, ମଣିକୁଣ୍ଡା, ଅଙ୍ଗୁଳାଇ, କୁହୁଡ଼ି ଓ ମଙ୍ଗରାଜପୁର ଗ୍ରାମପଞ୍ଚାୟତ |

### ୨୨. ଜିଲ୍ଲା - ଜଗତସିଂହପୁର

| | | |
|---|---|---|
| ୧୦୧. | ପାରାଦ୍ୱୀପ | ୧. କୁଜଙ୍ଗ ବ୍ଲକ, ୨. ପାରାଦ୍ୱୀପ (ପୌରପରିଷଦ), ୩. ତିର୍ତ୍ତୋଲ ବ୍ଲକର ଅମ୍ବେରୀ, କୋଲର, ସାମନ୍ତରାପୁର, ପୋରଗଦେଇ, ମଣିଜଙ୍ଗା, ବୋଧେଇ ଓ ଜଡ଼ତିରା ଗ୍ରାମପଞ୍ଚାୟତ |
| ୧୦୨. | ତିର୍ତ୍ତୋଲ (ଏସ୍.ସି.) | ୧. ବିରିଡ଼ି ବ୍ଲକ, ୨. ରଘୁନାଥପୁର ବ୍ଲକ, ୩. ତିର୍ତ୍ତୋଲ ବ୍ଲକର ବିରିତୋଳ, ବିଶନପୁର, ଦାଇଁଲୋ, ଗରାମ, ଗୋବିନ୍ଦପୁର, ଗୋପାଳପୁର, ଗୋପାଳପୁର(ଶ), ଇବ୍ରିସିଂହ, ଜଗନ୍ନାଥପୁର, କନକପୁର, କନିମୂଳ, କଟରା, କୋଷ୍ଟିମଲିକାପୁର, କୃଷ୍ଣାନନ୍ଦପୁର, ମୂଳିସିଂହ, ପଟିଲୋ, ସଅଁରା, ତରଜଙ୍ଗା, ତିର୍ତ୍ତୋଲ ଓ ତୁଳଙ୍ଗ ଗ୍ରାମପଞ୍ଚାୟତ |
| ୧୦୩. | ବାଲିକୁଦା-ଏରସମା | ୧. ବାଲିକୁଦା ବ୍ଲକ, ୨. ଏରସମା ବ୍ଲକ |
| ୧୦୪. | ଜଗତ୍ସିଂହପୁର | ୧. ନାଉଗାଁ ବ୍ଲକ, ୨. ଜଗତସିଂହପୁର ବ୍ଲକ, ୩. ଜଗତ୍ସିଂହପୁର (ପୌରପରିଷଦ) |

### ୨୩. ଜିଲ୍ଲା - ପୁରୀ

| | | |
|---|---|---|
| ୧୦୫. | କାକଟପୁର (ଏସ୍.ସି.) | ୧. କାକଟପୁର ବ୍ଲକ, ୨. ଅସ୍ତରଙ୍ଗ ବ୍ଲକ, ୩. କୋଣାର୍କ (ଏନ୍.ଏ.ସି.), ୪. ଗୋପ ବ୍ଲକର ଜଙ୍ଗଲବୋରି, ବୀରତୁଙ୍ଗ, ବଉଳାଙ୍ଗ, ଦେଷ୍ଟଳୀ, ଧୂମାଳ, ସୋରଭା, ମହଲପଡ଼ା, ଅଚ୍ୟୁତପୁର, ବନାଖଣ୍ଡି, ସିମିଳି, ସୁତନ, ତରକୋର ଓ ବଡ଼ଗାଁ ଗ୍ରାମପଞ୍ଚାୟତ |
| ୧୦୬. | ନିମାପଡ଼ା | ୧. ନିମାପଡ଼ା ବ୍ଲକ, ୨. ନିମାପଡ଼ା (ଏନ୍.ଏ.ସି.), ୩. ଗୋପ ବ୍ଲକର ନୂଆଖୋଲମରା, ରାହଙ୍ଗଗୋରଡ଼ା, ଅଣ୍ଡରାଇଚ୍ଛାପୁର, ଗଣେଶ୍ୱରପୁର, ଗୋପ, ବେଦପୁର, ବଡ଼ତରା, ନାଗପୁର, ବନ୍ତଳିଗ୍ରାମ, ବଣିଆସାହି, ଏରବଙ୍ଗ, କୁଆଁପଦା ଓ ପୟରା ଗ୍ରାମପଞ୍ଚାୟତ |
| ୧୦୭. | ପୁରୀ | ୧. ପୁରୀ ସଦର ବ୍ଲକର ବୀରପ୍ରତାପପୁର, ବାଲିପଡ଼ା, ଜମରସୁଆଁ, ବାଲିପୁଟ, ରାଏଗୋରଡ଼ା, ଗଡ଼ମୃଗଶୀରା, ଚାଳିଶିବାଟିଆ, ମାଳତୀପାଟପୁର, ଚନ୍ଦନପୁର, ଶାସନଦାମୋଦରପୁର, ସମଙ୍ଗ, ଗୋପୀନାଥପୁର, ହରେକୃଷ୍ଣପୁର, ବାଲିଗୁଆଳୀ ଓ ତଳଜଙ୍ଗ ଗ୍ରାମପଞ୍ଚାୟତ, ୨. ପୁରୀ (ପୌରପରିଷଦ), ୩. ଗୋପବ୍ଲକର ଇଡିଭୁଆଁ, ଗଡ଼ଭିଙ୍ଗୁରା ଓ ଛଇତନା ଗ୍ରାମପଞ୍ଚାୟତ |
| ୧୦୮. | ବ୍ରହ୍ମଗିରି | ୧. ପୁରୀ ସଦର ବ୍ଲକର କନ୍ହେଇ ବିଦ୍ୟାଧରପୁର, ଗୌଡ଼କେରା ବିଜୟରାମଚନ୍ଦ୍ରପୁର, ପ୍ରତାପରାମଚନ୍ଦ୍ରପୁର, ବୀରନରସିଂହପୁର, ବୀରବଳଭଦ୍ରପୁର, ପ୍ରତାପ ପୁରୁଷୋତ୍ତମପୁର, ହନ୍ତୁକ, ବାସୁଦେବପୁର କେରାଣ୍ଡିପୁର ଓ ଭାଇଲିପୁର ଗ୍ରାମପଞ୍ଚାୟତ, ୨. କୃଷ୍ଣପ୍ରସାଦ ବ୍ଲକ, ୩. ବ୍ରହ୍ମଗିରି ବ୍ଲକ |
| ୧୦୯. | ସତ୍ୟବାଦୀ | ୧. ସତ୍ୟବାଦୀ ବ୍ଲକ, ୨. କଣାସ ବ୍ଲକ |
| ୧୧୦. | ପିପିଲି | ୧. ପିପିଲି ବ୍ଲକ, ୨. ଡେଲାଙ୍ଗ ବ୍ଲକ, ୩. ପିପିଲି (ଏନ୍.ଏ.ସି.) |

### ୨୪. ଜିଲ୍ଲା - ଖୋର୍ଦ୍ଧା

| | | |
|---|---|---|
| ୧୧୧. | ଜୟଦେବ (ଏସ୍.ସି.) | ୧. ବାଲିଅନ୍ତା ବ୍ଲକ, ୨. ବାଲିପାଟଣା ବ୍ଲକ |
| ୧୧୨. | ଭୁବନେଶ୍ୱର (ମଧ୍ୟ) | ୧. ଭୁବନେଶ୍ୱର ମହାନଗର ନିଗମର ୱାର୍ଡ଼ ନମ୍ବର ୧୬ରୁ ୨୯ ଓ ୩୫ରୁ ୩୭ |

| | | |
|---|---|---|
| ୧୧୩. | ଭୁବନେଶ୍ୱର (ଉତ୍ତର) | ୧. ଭୁବନେଶ୍ୱର ମହାନଗର ନିଗମର ୱାର୍ଡ଼ ନମ୍ବର ୧ରୁ ୧୧ ଏବଂ ୧୩, ୨. ଭୁବନେଶ୍ୱର ବ୍ଲକର ରଘୁନାଥପୁର, ଦାଢ଼ା, କଲ୍ୟାଣପୁର, ବରିମୁଣ୍ଡ ଓ କଳାରାହାଙ୍ଗ ଗ୍ରାମପଞ୍ଚାୟତ |
| ୧୧୪. | ଏକାମ୍ର-ଭୁବନେଶ୍ୱର | ୧. ଭୁବନେଶ୍ୱର ମହାନଗର ନିଗମର ୱାର୍ଡ଼ ନମ୍ବର ୧୨, ୧୪, ୧୫ ଓ ୩୦ରୁ ୩୪ ଏବଂ ୱାର୍ଡ଼ ନମ୍ବର ୩୮ରୁ ୪୭, ୨. ଭୁବନେଶ୍ୱର ବ୍ଲକର ବାସୁଆଘାଇ, ଇଟିପୁର, ଟିକରପଡ଼ା, ଧଉଳି ଓ ଶିଶୁପାଳ ଗ୍ରାମପଞ୍ଚାୟତ |
| ୧୧୫. | ଜଟଣୀ | ୧. ଖୋର୍ଦ୍ଧା ବ୍ଲକର ଗଡ଼ହଳଦିଆ, କେରଙ୍ଗ, ମଲ୍ଲିପୁର, ଟାଙ୍ଗିଆପଡ଼ା, ପୁରୁସାହି ଓ ନାଳିପଡ଼ା-ଅର୍ଜୁନପୁର ଗ୍ରାମପଞ୍ଚାୟତ, ୨. ଜଟଣୀ ବ୍ଲକ, ୩. ଭୁବନେଶ୍ୱର ବ୍ଲକର ଚନ୍ଦକା, ଦାରୁଠେଙ୍ଗ, ଅନ୍ଧାରୁଆ, ପାଇକରାପୁର, ମେଣ୍ଢାଶାଳ, ତମାଣ୍ଡୋ, ନଁପୁଟ, କଣ୍ଟାବାଡ଼ ଓ ପାତ୍ରପଡ଼ା ଗ୍ରାମପଞ୍ଚାୟତ, ୪. ଜଟଣୀ (ପୌରପରିଷଦ) |
| ୧୧୬. | ବେଗୁନିଆ | ୧. ବେଗୁନିଆ ବ୍ଲକ, ୨. ବୋଲଗଡ଼ ବ୍ଲକ |
| ୧୧୭. | ଖୋର୍ଦ୍ଧା | ୧. ଟାଙ୍ଗୀ ବ୍ଲକ, ୨. ଖୋର୍ଦ୍ଧା ବ୍ଲକର ପଲ୍ଲାତୋଟାପଡ଼ା, ବାଜପୁର, ନିଜିଗଡ଼ତାପଙ୍ଗ, କଁପୁର, ଧଉଳିମୁହଁ, ବ୍ରଜମୋହନପୁର, ନରଣଗଡ଼, ଗୋଡ଼ିପଡ଼ା, ଜଙ୍କିଆ, ଗୋଳାବାଇଶାସନ, ଓରବରସିଂହ, କୁରାଢ଼ମଲ୍ଲ, ବଙ୍ଗିଦା ଓ କାଇପଦର ଗ୍ରାମପଞ୍ଚାୟତ, ୩. ଖୋର୍ଦ୍ଧା (ପୌରପରିଷଦ) |
| ୧୧୮. | ଚିଲିକା | ୧. ବାଣପୁର ବ୍ଲକ, ୨. ଚିଲିକା ବ୍ଲକ, ୩. ବାଣପୁର (ଏନ୍.ଏ.ସି.), ୪. ବାଲୁଗାଁ (ଏନ୍.ଏ.ସି.) |

**୨୫. ଜିଲ୍ଲା - ନୟାଗଡ଼**

| | | |
|---|---|---|
| ୧୧୯. | ରଣପୁର | ୧. ଓଡ଼ଗାଁ ବ୍ଲକର ଗୋଡିସାହି, ସୋଳପଟା, ମଗରବନ୍ଧ, ଶରଣକୁଳ, ଶିଖରପୁର, ଆଙ୍ଗିସିଙ୍ଗି, ଡିମିସର, ଗୋଡ଼ିପଡ଼ା, ପଞ୍ଚୁମୁ, କଜଳାଇପଲ୍ଲୀ, ବରସାହି, ଗୋଡ଼ିପଲ୍ଲୀ, ପଞ୍ଚରିଡ଼ା-ମାନପୁର, ହରିହରପୁର ଓ ବଡ଼ଗୋରଡ଼ା ଗ୍ରାମପଞ୍ଚାୟତ, ୨. ରଣପୁର ବ୍ଲକ |
| ୧୨୦. | ଖଣ୍ଡପଡ଼ା | ୧. ଖଣ୍ଡପଡ଼ା ବ୍ଲକ, ୨. ଭାପୁର ବ୍ଲକ, ୩. ଖଣ୍ଡପଡ଼ା (ଏନ୍.ଏ.ସି.) |
| ୧୨୧. | ଦଶପଲ୍ଲା (ଏସ୍.ସି.) | ୧. ଦଶପଲ୍ଲା ବ୍ଲକ, ୨. ଗଣିଆ ବ୍ଲକ, ୩. ନୂଆଗାଁ ବ୍ଲକ |
| ୧୨୨. | ନୟାଗଡ଼ | ୧. ନୟାଗଡ଼ ବ୍ଲକ, ୨. ଓଡ଼ଗାଁ ବ୍ଲକର ସୁନାମୁହିଁ, ପାଣ୍ଡେରିପଡ଼ା, ଗିରିଡ଼ିପଲ୍ଲୀ, କୁରାଳ, ରବିଗାଡ଼ିଆ, ପନ୍ତିଖାରି, କୋରପିଠା, ସାକେରି, ଶରଧାପୁର, ନନ୍ଦିଘୋର, ଗୌଡ଼ପୁଟ, କୋମଣ୍ଡ, ରୋହିବାଙ୍କ, ମାଛିପଡ଼ା, ବାଣ୍ଡପୁର, ରଙ୍ଗଣୀପାଟଣା ଓ ଓଡ଼ଗାଁ ଗ୍ରାମପଞ୍ଚାୟତ, ୩. ନୟାଗଡ଼ (ଏନ୍.ଏ.ସି.) |

**୨୬. ଜିଲ୍ଲା - ଗଞ୍ଜାମ**

| | | |
|---|---|---|
| ୧୨୩. | ଭଞ୍ଜନଗର | ୧. ଭଞ୍ଜନଗର ବ୍ଲକ, ୨. ଜଗନ୍ନାଥପ୍ରସାଦ ବ୍ଲକ, ୩. ଭଞ୍ଜନଗର (ଏନ୍.ଏ.ସି.) |
| ୧୨୪. | ପୋଲସରା | ୧. ବୁଗୁଡ଼ା ବ୍ଲକ, ୨. ପୋଲସରା ବ୍ଲକ, ୩. ବୁଗୁଡ଼ା (ଏନ୍.ଏ.ସି.), ୪. ପୋଲସରା (ଏନ୍.ଏ.ସି.) |

| | | |
|---|---|---|
| ୧୨୫. | କବିସୂର୍ଯ୍ୟନଗର | ୧. ବେଗୁନିଆପଡ଼ା ବ୍ଲକ, ୨. କୋଦଳା (ଏନ୍.ଏ.ସି.), ୩. କବିସୂର୍ଯ୍ୟନଗର ବ୍ଲକର ଗଙ୍ଗାପୁର, ବାଉଁଶିଆ, ବୁଢ଼ାମ୍ବ, ଖଜାପଲ୍ଲୀ, ବଡ଼ମହୁରୀ, ଆଠଗଡ଼ପାଟଣା, ଗୁଡ଼ିଆଳୀ, ଜରଡ଼ ଓ ରିଶିପୁର ଗ୍ରାମପଞ୍ଚାୟତ, ୪. କବିସୂର୍ଯ୍ୟନଗର (ଏନ୍.ଏ.ସି.), ୫. ପୁରୁଷୋତ୍ତମପୁର ବ୍ଲକର ସମା, ଚିଙ୍ଗୁଡ଼ିଘାଇ, ସିକୁଳା, ଅରଖପୁର, ଭୁତସରସିଙ୍ଗି, ବଡ଼ଖରିଡ଼ା, ପାଣ୍ଡିଆ, ଚାଙ୍ଗୁଡ଼ିପଦର-ନୂଆଗାଁ, ଝାଡ଼ବାଇ, ଟଙ୍କଛାଇ ଓ ଅନ୍ତରିଗାଁ ଗ୍ରାମପଞ୍ଚାୟତ |
| ୧୨୬. | ଖଲିକୋଟ (ଏସ୍.ସି.) | ୧. ଖଲିକୋଟ ବ୍ଲକ, ୨. ପୁରୁଷୋତ୍ତମପୁର ବ୍ଲକର ଆଛୁଲି, ହାଣ୍ଡିଘର, କେ.ଏନ୍.ପୁର, ପ୍ରତାପୁର, ରଣଝାଲି, ରାଇପୁର, ଷୋଳଘର, ଜଗନ୍ନାଥପୁର, ବାଘଳା, ଭାଟକୁମରଡ଼ା, ସୁନାଥର, ବଡ଼ବରଗାଁ, ଭୀମପୁର, ଗାଙ୍ଗଦହଣୀ ଓ ଜାମୁନି ଗ୍ରାମପଞ୍ଚାୟତ, ୩. ଖଲ୍ଲିକୋଟ (ଏନ୍.ଏ.ସି.), ୪. ପୁରୁଷୋତ୍ତମପୁର (ଏନ୍.ଏ.ସି.) |
| ୧୨୭. | ଛତ୍ରପୁର (ଏସ୍.ସି.) | ୧. ଗଞ୍ଜାମ ବ୍ଲକ, ୨. ଛତ୍ରପୁର ବ୍ଲକ, ୩. ଛତ୍ରପୁର (ଏନ୍.ଏ.ସି.), ୪. ଗଞ୍ଜାମ (ଏନ୍.ଏ.ସି.), ୫. ରମ୍ଭା (ଏନ୍.ଏ.ସି.) |
| ୧୨୮. | ଆସ୍କା | ୧. ଆସ୍କା ବ୍ଲକ, ୨. କବିସୂର୍ଯ୍ୟନଗର ବ୍ଲକର ସୁବଳୟା, କନିଆରୀ, ବରିଡ଼ା, ପାଇକଯମୁନା, ସୁନାପଲ୍ଲୀ, ସିଆଳିଆ, ନନ୍ଦିଆଗଡ଼, ବୋରସିଙ୍ଗି, ଆମ୍ବପୁଆ, ବାଲିଆସରା, ବୋଲସର ଓ ସୁନାରିଝୋଳା ଗ୍ରାମପଞ୍ଚାୟତ, ୩. ଆସ୍କା (ଏନ୍.ଏ.ସି.) |
| ୧୨୯. | ସୋରଡ଼ା | ୧. ସୋରଡ଼ା ବ୍ଲକ, ୨. ବେଲଗୁଣ୍ଠା ବ୍ଲକ, ୩. ସୋରଡ଼ା (ଏନ୍.ଏ.ସି.), ୪. ବେଲଗୁଣ୍ଠା (ଏନ୍.ଏ.ସି.) |
| ୧୩୦. | ସାନଖେମୁଣ୍ଡି | ୧. ଧରାକୋଟ ବ୍ଲକ, ୨. ସାନଖେମୁଣ୍ଡି ବ୍ଲକ |
| ୧୩୧. | ହିଞ୍ଜିଳି | ୧. ଶେରଗଡ଼ ବ୍ଲକ, ହିଞ୍ଜିଳିକାଟୁ ବ୍ଲକ, ୩. ହିଞ୍ଜିଳିକାଟୁ (ଏନ୍.ଏ.ସି.) |
| ୧୩୨. | ଗୋପାଳପୁର | ୧. ରଙ୍ଗେଇଲୁଣ୍ଡା ବ୍ଲକ, ୨. କୁକୁଡ଼ାଖଣ୍ଡି ବ୍ଲକର ହୁଗୁଳାପଟା, ଗୁରୁଣ୍ଡି, ବୋରିଗାଁ ଓ ନିମଖଣ୍ଡି ଗ୍ରାମପଞ୍ଚାୟତ, ୩. ଗୋପାଳପୁର (ଏନ୍.ଏ.ସି.), ୪. ବ୍ରହ୍ମପୁର ପୌରପରିଷଦର ୱାର୍ଡ଼ ନମ୍ବର ୨୫ରୁ ୨୭ |
| ୧୩୩. | ବ୍ରହ୍ମପୁର | ୧. ବ୍ରହ୍ମପୁର ପୌରପରିଷଦର ୱାର୍ଡ଼ ନମ୍ବର ୧ରୁ ୨୪ |
| ୧୩୪. | ଦିଗପହଣ୍ଡି | ୧. ଦିଗପହଣ୍ଡି ବ୍ଲକ, ୨. କୁକୁଡ଼ାଖଣ୍ଡି ବ୍ଲକର ରୋହିଗାଁ, ବଉଳଝୋଳି, କୁକୁଡ଼ାଖଣ୍ଡି, ମସିଆଖାଲି, ଜଗଦଳପୁର, ଆଙ୍କୁଶପୁର, ଦକ୍ଷିଣପୁର, ବାଲିପଡ଼ା, ଡେଙ୍ଗାପଦର, ବଛପଲି, ଅନନ୍ତେଇ, ଲାଠି, ମହଡ଼ା, କଙ୍କିଆ, ସାହାଳା ଓ ବାଘଲଟି ଗ୍ରାମପଞ୍ଚାୟତ, ୩. ଦିଗପହଣ୍ଡି (ଏନ୍.ଏ.ସି.) |
| ୧୩୫. | ଚିକିଟି | ୧. ପାତ୍ରପୁର ବ୍ଲକ, ୨. ଚିକିଟି ବ୍ଲକ, ୩. ଚିକିଟି (ଏନ୍.ଏ.ସି.) |

**୨୭. ଜିଲ୍ଲା - ଗଜପତି**

| | | |
|---|---|---|
| ୧୩୬. | ମୋହନା (ଏସ୍.ଟି.) | ୧. ମୋହନା ବ୍ଲକ, ୨. ରାମଗିରି-ଉଦୟଗିରି ବ୍ଲକ, ୩. ନୂଆଗଡ଼ ବ୍ଲକ, ୪. ରାୟଗଡ଼ା ବ୍ଲକ |

| | | |
|---|---|---|
| ୧୩୭. | ପାରଳାଖେମୁଣ୍ଡି | ୧. ଗୁମ୍ମା ବ୍ଲକ, ୨. କାଶୀନଗର ବ୍ଲକ, ୩. ପାରଳାଖେମୁଣ୍ଡି ବ୍ଲକ, ୪. ପାରଳାଖେମୁଣ୍ଡି (ପୌରପରିଷଦ), ୫. କାଶୀନଗର (ଏନ୍.ଏ.ସି.) |
| | | **୨୮. ଜିଲ୍ଲା - ରାୟଗଡ଼ା** |
| ୧୩୮. | ଗୁଣୁପୁର (ଏସ୍.ଟି.) | ୧. ରାମନାଗୁଡ଼ା ବ୍ଲକ, ୨. ଗୁଣୁପୁର ବ୍ଲକ, ୩. ଗୁଣୁପୁର (ଏନ୍.ଏ.ସି.), ୪. ପଦ୍ମପୁର ବ୍ଲକ, ୫. ଚନ୍ଦ୍ରପୁର ବ୍ଲକ, ୬. ଗୁଡ଼ାରି ବ୍ଲକ, ୭. ଗୁଡ଼ାରି (ଏନ୍.ଏ.ସି.) |
| ୧୩୯. | ବିଷମ କଟକ (ଏସ୍.ଟି.) | ୧. ମୁନିଗୁଡ଼ା ବ୍ଲକ, ୨. କୋଲନରା ବ୍ଲକ, ୩. ବିଷମ କଟକ ବ୍ଲକ, ୪. କଲ୍ୟାଣସିଂହପୁର ବ୍ଲକ |
| ୧୪୦. | ରାୟଗଡ଼ା (ଏସ୍.ଟି.) | ୧. ରାୟଗଡ଼ା (ପୌରପରିଷଦ), ୨. କାଶୀପୁର ବ୍ଲକ, ୩. ରାୟଗଡ଼ା ବ୍ଲକ |
| | | **୨୯. ଜିଲ୍ଲା - କୋରାପୁଟ** |
| ୧୪୧. | ଲକ୍ଷ୍ମୀପୁର (ଏସ୍.ଟି.) | ୧. ଦଶମନ୍ତପୁର ବ୍ଲକ, ୨. ଲକ୍ଷ୍ମୀପୁର ବ୍ଲକ, ୩. ବନ୍ଧୁଗାଁ ବ୍ଲକ, ୪. ନାରାୟଣପାଟଣା ବ୍ଲକ |
| ୧୪୨. | କୋଟପାଡ଼ (ଏସ୍.ଟି.) | ୧. କୋଟପାଡ଼ ବ୍ଲକ, ୨. କୁନ୍ଦ୍ରା ବ୍ଲକ, ୩. କୋଟପାଡ଼ (ଏନ୍.ଏ.ସି.), ୪. ବରୀଗୁମା ବ୍ଲକର ଡେଙ୍ଗାପଦର, ଆଉଁଳି, ମାଳଦା, ସାନପାରିଆ, ଜୁଜାରି, କାମରା, ପଣ୍ଡସଗୁଡ଼ା, ଶଶାହାଣ୍ଡି, କଣାଗାଁ, ଅଞ୍ଚଳା ଓ ବିଜାପୁର ଗ୍ରାମପଞ୍ଚାୟତ, ୫. ବୈପାରିଗୁଡ଼ା ବ୍ଲକର ଗୁପ୍ତେଶ୍ୱର, ରାମଗିରି, ଦଣ୍ଡାବାଡ଼, ବାଲିଗାଁ, କାଠପଡ଼ା, ମାଝୀଗୁଡ଼ା ଓ ତେନ୍ତୁଳିଗୁମ୍ମା ଗ୍ରାମପଞ୍ଚାୟତ |
| ୧୪୩. | ଜୟପୁର | ୧. ଜୟପୁର ବ୍ଲକ, ୨. ଜୟପୁର (ପୌରପରିଷଦ), ୩. ବରୀଗୁମା ବ୍ଲକର ଭୈରବସିଙ୍ଗିପୁର, ବେଣାଗାଁ, ବଡ଼ିଗାଁ, ବରୀଗୁମା, ଚମ୍ପାପଦର, ଗୁଜିନୀଗୁଡ଼ା, ଗୁମୁଡ଼ା, ହରଡ଼ାଗୁଡ଼ା, ହର୍ଦ୍ଦୋଳୀ, କାମ୍ତା, କାଠରଗଡ଼ା, କୁମୁଲି, ମୁଞ୍ଜା, ନାରିଗାଁ, ନୂଆଗାଁ, ରଣସପୁର, ସର୍ଗିଗୁଡ଼ା, ସେମଳାଗୁଡ଼ା ଓ ବେଣାସୁର ଗ୍ରାମପଞ୍ଚାୟତ |
| ୧୪୪. | କୋରାପୁଟ (ଏସ୍.ସି.) | ୧. କୋରାପୁଟ ବ୍ଲକର ବଡ଼ଶୁକ୍ର, ଦେଓଘାଟି, କେନ୍ଦାର, କେରେଙ୍ଗା, ଲଙ୍କାପୁଟ, ମହାଦେଇପୁଟ, ମନବର, ମଷ୍ଟିପୁଟ, ପଦ୍ମପୁର ଓ ଉମୁରି ଗ୍ରାମପଞ୍ଚାୟତ, ୨. ଲମତାପୁଟ ବ୍ଲକ, ୩. କୋରାପୁଟ (ଏନ୍.ଏ.ସି.), ୪. ବୈପାରିଗୁଡ଼ା ବ୍ଲକର ବୋଦାପୁଟ, ବୈପାରୀଗୁଡ଼ା, ଚନ୍ଦ୍ରପଡ଼ା, ଚିପାଖୁର, ଦଶମନ୍ତପୁର, ଦୋରାଗୁଡ଼ା, କେନ୍ଦୁଗୁଡ଼ା, କଲାର ଓ ମହୁଲି ଗ୍ରାମପଞ୍ଚାୟତ, ୫. ସୁନାବେଡ଼ା (ଏନ୍.ଏ.ସି.) |
| ୧୪୫. | ପଟ୍ଟାଙ୍ଗି (ଏସ୍.ଟି.) | ୧. ସେମିଳିଗୁଡ଼ା ବ୍ଲକ, ୨. ନନ୍ଦପୁର ବ୍ଲକ, ୩. ପଟ୍ଟାଙ୍ଗି ବ୍ଲକ, ୪. କୋରାପୁଟ ବ୍ଲକର ଲିଟିଗୁଡ଼ା, ଡୁମୁରିପଦର ଓ ମାଥାଲପୁଟ, (ଦାମନଯୋଡ଼ି ସି.ଟି. ସହିତ) ଗ୍ରାମପଞ୍ଚାୟତ |
| | | **୩୦. ଜିଲ୍ଲା - ମାଲକାନଗିରି** |
| ୧୪୬. | ମାଲକାନଗିରି (ଏସ୍.ଟି.) | ୧. କାଲିମେଳା ବ୍ଲକ, ୨. ମାଲକାନଗିରି ବ୍ଲକ, ୩. ମାଲକାନଗିରି (ଏନ୍.ଏ.ସି.), ୪. ପଡ଼ିଆ ବ୍ଲକ, ୫. କୋରୁକୋଣ୍ଡା ବ୍ଲକର ତଣ୍ଡିକି, ଚାଲାଣଗୁଡ଼ା, ମାଟାପାକା, ତଣ୍ଡାପାଲି, ଗୋରାଖୁଣ୍ଟା, ଶିଖପାଲୀ, ବଦଲି, କୋରୁକୋଣ୍ଡା ଓ ତୁମୁସାପାଲୀ ଗ୍ରାମପଞ୍ଚାୟତ |

| | | |
|---|---|---|
| ୧୪୭. | ଚିତ୍ରକୋଣ୍ଡା (ଏସ୍.ଟି.) | ୧. ମାଥିଲି ବ୍ଲକ, ୨. କୁଡୁମୁଲୁଗୁମ୍ମା ବ୍ଲକ, ୩. ବାଲିମେଳା (ଏନ୍.ଏ.ସି.), ୪. ଖଇରପୁଟ ବ୍ଲକ, ୫. କୋରୁକୋଣ୍ଡା ବ୍ଲକର ଚିତାପାରି-୩, ଚିତ୍ରକୋଣ୍ଡା, ଦୋରାଗୁଡ଼ା, ଡୁଡ଼ାମେଟା, ଗୁଣ୍ଡାୱାଡ଼ା, କାମୱାଡ଼ା, କପାତୁଟି, ମଣ୍ଡାପଲ୍ଲୀ, ମାରିୱାଡ଼ା, ନୀଳକାମ୍ବେରୁ, ନୂଆଗୁଡ଼ା, ପୁରୁଣା ଚିମିଟାପାଲୀ, ପୋଟ୍ରେଲ, ତାର୍ଲାକୋଟା ଓ ଟନେଲ-କ୍ୟାମ୍ପ ଗ୍ରାମପଞ୍ଚାୟତ |

**ସାରଣୀ-ଖ**

**ସଂସଦୀୟ ନିର୍ବାଚନମଣ୍ଡଳୀ ଓ ସେଗୁଡ଼ିକର ବିସ୍ତାର**

| କ୍ରମିକ ସଂଖ୍ୟା | ସଂସଦୀୟ ନିର୍ବାଚନ ମଣ୍ଡଳୀର ନାମ | ବିଧାନସଭା ନିର୍ବାଚନ ମଣ୍ଡଳୀ ଅନୁସାରେ ବିସ୍ତାର |
|---|---|---|
| ୧. | ବରଗଡ଼ | ୧. ପଦ୍ମପୁର, ୨. ବିଜେପୁର, ୩. ବରଗଡ଼, ୪. ଅତାବିରା (ଏସ୍.ସି.), ୫. ଭଟ୍ଲି, ୬. ବ୍ରଜରାଜନଗର, ୭. ଝାରସୁଗୁଡ଼ା |
| ୨. | ସୁନ୍ଦରଗଡ଼ (ଏସ୍.ଟି.) | ୮. ତଳସରା (ଏସ୍.ଟି.), ୯. ସୁନ୍ଦରଗଡ଼ (ଏସ୍.ଟି.), ୧୦. ବୀରମିତ୍ରପୁର (ଏସ୍.ଟି.), ୧୧. ରଘୁନାଥପାଲି (ଏସ୍.ସି.), ୧୨. ରାଉରକେଲା, ୧୩. ରାଜଗାଙ୍ଗପୁର (ଏସ୍.ଟି.), ୧୪. ବଣାଇ (ଏସ୍.ଟି.) |
| ୩. | ସମ୍ବଲପୁର | ୧୫. କୁଚିଣ୍ଡା (ଏସ୍.ଟି.), ୧୬. ରେଙ୍ଗାଲି (ଏସ୍.ସି.), ୧୭. ସମ୍ବଲପୁର, ୧୮. ରେଢ଼ାଖୋଲ, ୧୯. ଦେବଗଡ଼, ୬୨. ଛେଣ୍ଡିପଦା (ଏସ୍.ସି.), ୬୩. ଆଠମଲ୍ଲିକ |
| ୪. | କେନ୍ଦୁଝର (ଏସ୍.ଟି.) | ୨୦. ତେଲକୋଇ (ଏସ୍.ଟି.), ୨୧. ଘାସିପୁରା, ୨୨. ଆନନ୍ଦପୁର (ଏସ୍.ସି.), ୨୩. ପାଟଣା (ଏସ୍.ଟି.), ୨୪. କେନ୍ଦୁଝର (ଏସ୍.ଟି.), ୨୫. ଚମ୍ପୁଆ, ୩୦. କରଞ୍ଜିଆ (ଏସ୍.ଟି.) |
| ୫. | ମୟୂରଭଞ୍ଜ (ଏସ୍.ଟି.) | ୨୬. ଯଶିପୁର (ଏସ୍.ଟି.), ୨୭. ସାରସକଣା (ଏସ୍.ଟି.), ୨୮. ରାଇରଙ୍ଗପୁର (ଏସ୍.ଟି.), ୨୯. ବାଙ୍ଗିରିପୋଷୀ (ଏସ୍.ଟି.), ୩୧. ଉଦଳା (ଏସ୍.ଟି.), ୩୩. ବାରିପଦା (ଏସ୍.ଟି.), ୩୪. ମୋରଡ଼ା |
| ୬. | ବାଲେଶ୍ୱର | ୩୨. ବଡ଼ସାହି (ଏସ୍.ସି.), ୩୫. ଜଳେଶ୍ୱର, ୩୬. ଭୋଗରାଇ, ୩୭. ବସ୍ତା, ୩୮. ବାଲେଶ୍ୱର, ୩୯. ରେମୁଣା (ଏସ୍.ସି.), ୪୦. ନୀଳଗିରି |
| ୭. | ଭଦ୍ରକ (ଏସ୍.ସି.) | ୪୧. ସୋରୋ (ଏସ୍.ସି.), ୪୨. ସିମୁଳିଆ, ୪୩. ଭଣ୍ଡାରିପୋଖରୀ, ୪୪. ଭଦ୍ରକ, ୪୫. ବାସୁଦେବପୁର, ୪୬. ଧାମନଗର (ଏସ୍.ସି.), ୪୭. ଚାନ୍ଦବାଲି |
| ୮. | ଯାଜପୁର (ଏସ୍.ସି.) | ୪୮. ବିଞ୍ଝାରପୁର (ଏସ୍.ସି.), ୪୯. ବରୀ, ୫୦. ବଡ଼ଚଣା, ୫୧. ଧର୍ମଶାଳା, ୫୨. ଯାଜପୁର, ୫୩. କୋରେଇ, ୫୪. ସୁକିନ୍ଦା |
| ୯. | ଢେଙ୍କାନାଳ | ୫୫. ଢେଙ୍କାନାଳ, ୫୬. ହିନ୍ଦୋଳ (ଏସ୍.ସି.), ୫୭. କାମାକ୍ଷାନଗର, ୫୮. ପରଜଙ୍ଗ, ୫୯. ପାଲଲହଡ଼ା, ୬୦. ତାଳଚେର, ୬୧. ଅନୁଗୋଳ |

| | | |
|---|---|---|
| ୧୦. | ବଲାଙ୍ଗିର | ୬୪. ବୀରମହାରାଜପୁର (ଏସ୍.ସି.), ୬୫. ସୋନପୁର, ୬୬. ଲୋଇସିଂହା (ଏସ୍.ସି.), ୬୭. ପାଟଣାଗଡ଼, ୬୮. ବଲାଙ୍ଗିର, ୬୯. ଟିଟିଲାଗଡ଼, ୭୦. କଣ୍ଟାବାଞ୍ଜି |
| ୧୧. | କଳାହାଣ୍ଡି | ୭୧. ନୂଆପଡ଼ା, ୭୨. ଖଡ଼ିଆଳ, ୭୭. ଲାଞ୍ଜିଗଡ଼ (ଏସ୍.ଟି.), ୭୮. ଜୁନାଗଡ଼, ୭୯. ଧର୍ମଗଡ଼, ୮୦. ଭବାନୀପାଟଣା (ଏସ୍.ସି.), ୮୧. ନର୍ଲା |
| ୧୨. | ନବରଙ୍ଗପୁର (ଏସ୍.ଟି.) | ୭୩. ଉମରକୋଟ (ଏସ୍.ଟି.), ୭୪. ଝରିଗାଁ (ଏସ୍.ଟି.), ୭୫. ନବରଙ୍ଗପୁର (ଏସ୍.ଟି.), ୭୬. ଡାବୁଗାଁ (ଏସ୍.ଟି.), ୧୪୨. କୋଟପାଡ଼ (ଏସ୍.ଟି.), ୧୪୬. ମାଲକାନଗିରି (ଏସ୍.ଟି.), ୧୪୭. ଚିତ୍ରକୋଣ୍ଡା (ଏସ୍.ଟି.) |
| ୧୩. | କନ୍ଧମାଳ | ୮୨. ବାଲିଗୁଡ଼ା (ଏସ୍.ଟି.), ୮୩. ଘୁ. ଉଦୟଗିରି (ଏସ୍.ଟି.), ୮୪. ଫୁଲବାଣୀ (ଏସ୍.ଟି.), ୮୫. କଣ୍ଟାମାଳ, ୮୬. ବଉଦ, ୧୨୧. ଦଶପଲ୍ଲା (ଏସ୍.ସି.), ୧୨୩. ଭଞ୍ଜନଗର |
| ୧୪. | କଟକ | ୮୭. ବଡ଼ମ୍ବା, ୮୮. ବାଙ୍କୀ, ୮୯. ଆଠଗଡ଼, ୯୦. ବାରବାଟୀ-କଟକ, ୯୧. ଚୌଦ୍ୱାର-କଟକ, ୯୩. କଟକ ସଦର (ଏସ୍.ସି.), ୧୨୦. ଖଣ୍ଡପଡ଼ା |
| ୧୫. | କେନ୍ଦ୍ରାପଡ଼ା | ୯୪. ସାଲେପୁର, ୯୫. ମାହାଙ୍ଗା, ୯୬. ପାଟକୁରା, ୯୭. କେନ୍ଦ୍ରାପଡ଼ା (ଏସ୍.ସି.), ୯୮. ଆଳି, ୯୯. ରାଜନଗର, ୧୦୦. ମହାକାଳପଡ଼ା |
| ୧୬. | ଜଗତ୍‌ସିଂହପୁର (ଏସ୍.ସି.) | ୯୨. ନିଆଳି (ଏସ୍.ସି.), ୧୦୧. ପାରାଦ୍ୱୀପ, ୧୦୨. ତିର୍ତ୍ତୋଲ (ଏସ୍.ସି.), ୧୦୩. ବାଲିକୁଦା-ଏରସମା, ୧୦୪. ଜଗତ୍‌ସିଂହପୁର, ୧୦୫. କାକଟପୁର (ଏସ୍.ସି.), ୧୦୬. ନିମାପଡ଼ା |
| ୧୭. | ପୁରୀ | ୧୦୭. ପୁରୀ, ୧୦୮. ବ୍ରହ୍ମଗିରି, ୧୦୯. ସତ୍ୟବାଦୀ, ୧୧୦. ପିପିଲି, ୧୧୮. ଚିଲିକା, ୧୧୯. ରଣପୁର, ୧୨୨. ନୟାଗଡ଼ |
| ୧୮. | ଭୁବନେଶ୍ୱର | ୧୧୧. ଜୟଦେବ (ଏସ୍.ସି.), ୧୧୨. ଭୁବନେଶ୍ୱର (ମଧ୍ୟ), ୧୧୩. ଭୁବନେଶ୍ୱର (ଉତ୍ତର), ୧୧୪. ଏକାମ୍ର-ଭୁବନେଶ୍ୱର, ୧୧୫. ଜଟଣୀ, ୧୧୬. ବେଗୁନିଆ, ୧୧୭. ଖୋର୍ଦ୍ଧା |
| ୧୯. | ଆସ୍କା | ୧୨୪. ପୋଲସରା, ୧୨୫. କବିସୂର୍ଯ୍ୟନଗର, ୧୨୬. ଖଲ୍ଲିକୋଟ (ଏସ୍.ସି.), ୧୨୮. ଆସ୍କା, ୧୨୯. ସୋରଡ଼ା, ୧୩୦. ସାନଖେମୁଣ୍ଡି, ୧୩୧. ହିଞ୍ଜିଳି |
| ୨୦. | ବ୍ରହ୍ମପୁର | ୧୨୭. ଛତ୍ରପୁର (ଏସ୍.ସି.), ୧୩୨. ଗୋପାଳପୁର, ୧୩୩. ବ୍ରହ୍ମପୁର, ୧୩୪. ଦିଗପହଣ୍ଡି, ୧୩୫. ଚିକିଟି, ୧୩୬. ମୋହନା (ଏସ୍.ଟି.), ୧୩୭. ପାରଳାଖେମୁଣ୍ଡି |
| ୨୧. | କୋରାପୁଟ (ଏସ୍.ଟି.) | ୧୩୮. ଗୁଣୁପୁର (ଏସ୍.ଟି.), ୧୩୯. ବିଷମ କଟକ (ଏସ୍.ଟି.), ୧୪୦. ରାୟଗଡ଼ା (ଏସ୍.ଟି.), ୧୪୧. ଲକ୍ଷ୍ମୀପୁର (ଏସ୍.ଟି.), ୧୪୩. ଜୟପୁର, ୧୪୪. କୋରାପୁଟ (ଏସ୍.ସି.), ୧୪୫. ପଟ୍ଟାଙ୍ଗି (ଏସ୍.ଟି.) |

**ଟିପ୍ପଣୀ :** ସାରଣୀ-କ ରେ ଥିବା ଜିଲ୍ଲା, ସବ୍-ଡିଭିଜନ, ଗୋଷ୍ଠୀ ଉନ୍ନୟନ ବ୍ଲକ (CDB) ଗ୍ରାମପଞ୍ଚାୟତ, ମହାନଗର ନିଗମ (MC), ପୌରପରିଷଦ (M), ଅଧିସୂଚିତ କ୍ଷେତ୍ର ପରିଷଦ (NAC), ଆଉଟ ଗ୍ରୋଥ୍ (OG) ୱାର୍ଡ଼ ଓ ସେନ୍‌ସସ୍ ସହର (CT) ବା ଅନ୍ୟ କ୍ଷେତ୍ରୀୟ ଡିଭିଜନ ପ୍ରତି ପ୍ରସଙ୍ଗ ସୂଚନା, ତା. ୧୫ ଫେବୃଆରୀ, ୨୦୦୪ରେ ଜିଲ୍ଲା ସବ୍‌ଡିଭିଜନ୍ ଗୋଷ୍ଠୀ ଉନ୍ନୟନ ବ୍ଲକ (CDB), ଗ୍ରାମପଞ୍ଚାୟତ (GP), ମହାନଗର ନିଗମ (MC), ପୌରପରିଷଦ (M), ଅଧିସୂଚିତ କ୍ଷେତ୍ର ପରିଷଦ (NAC), ଆଉଟ ଗ୍ରୋଥ (OG), ୱାର୍ଡ଼ ଓ ସେନ୍‌ସସ୍ ସହରରେ ଅନ୍ତର୍ଭୁକ୍ତ ଥିବା କ୍ଷେତ୍ରକୁ ବୁଝାଇବ ।

ସ୍ୱା/-
କୁଳଦୀପ ସିଂହ
ଅଧ୍ୟକ୍ଷ

ସ୍ୱା/-
ଏନ୍. ଗୋପାଳସ୍ୱାମୀ
ସଦସ୍ୟ

ସ୍ୱା/-
ସଞ୍ଜୀବ ଚନ୍ଦ୍ର ହୋତା
ସଦସ୍ୟ

ଆଦେଶ କ୍ରମେ
ଶଂଗାରା ରାମ
ସଚିବ

------

# ଶିଳ୍ପ ବିଭାଗର ୨୦୦୭-୦୮ ବର୍ଷର କାର୍ଯ୍ୟାବଳୀର ବାର୍ଷିକ ବିବରଣୀ

**ରା**ଜ୍ୟରେ ଶିଳ୍ପର ବିକାଶ ଓ ଉନ୍ନୟନ ଶିଳ୍ପ ବିଭାଗର ଦାୟିତ୍ୱ ଅଟେ । ଉପରୋକ୍ତ ଲକ୍ଷ୍ୟ ସାଧନ ନିମନ୍ତେ ଶିଳ୍ପ ବିଭାଗ ରାଜ୍ୟରେ ଶିଳ୍ପର ବିକାଶ ତଥା ପୁଞ୍ଜିନିବେଶ ପାଇଁ ସମୃଦ୍ଧ ଶିଳ୍ପନୀତି ପ୍ରଣୟନ କରିଆସୁଅଛି । ଏହି ବିଭାଗ ରାଜ୍ୟରେ ଗଚ୍ଛିତ ଥିବା ଖଣିଜ ଦ୍ରବ୍ୟର ମୂଲ୍ୟଭିତ୍ତିକ ବିନିଯୋଗ ହେବାସହ ନିଯୁକ୍ତି ସୁଯୋଗର ବିକାଶ ଉପରେ ସର୍ବଦା ଗୁରୁତ୍ୱ ଦେଇଆସୁଅଛି । ଉପରୋକ୍ତ ଲକ୍ଷ୍ୟକୁ ଆଖି ଆଗରେ ରଖି ଶିଳ୍ପନୀତି-୨୦୦୭ ପ୍ରଣୟନ କରାଯାଇଅଛି । ଏକ ସୁସ୍ଥ ବାତାବରଣ ସହ ସମସ୍ତ ନୀତି ନିୟମର ସରଳୀକରଣ କରି ରାଜ୍ୟରେ ପୁଞ୍ଜିନିବେଶ ଓ ଶିଳ୍ପ ପ୍ରତିଷ୍ଠା ନିମନ୍ତେ ସହାୟକ ହେବା ଏହି ଶିଳ୍ପ ନୀତିର ଉଦ୍ଦେଶ୍ୟ ।

ଉପରୋକ୍ତ ଶିଳ୍ପନୀତିଦ୍ୱାରା ପ୍ରୋତ୍ସାହିତ ହୋଇ ଭିନ୍ନ ଭିନ୍ନ ପ୍ରକାରର ଶିଳ୍ପାନୁଷ୍ଠାନ ଯଥା ଖଣିଜ ଶିଳ୍ପ କ୍ଷେତ୍ରରେ ଇସ୍ପାତ, ଶକ୍ତି, ଆଲୁମିନିୟମ ଏବଂ ସିମେଣ୍ଟ ଶିଳ୍ପ ସ୍ଥାପନ ପାଇଁ ଅନେକଗୁଡ଼ିଏ ପ୍ରସ୍ତାବ ସରକାରଙ୍କର ହସ୍ତଗତ ହୋଇଛି । ଇସ୍ପାତ କ୍ଷେତ୍ରରେ ସ୍ୱାକ୍ଷରିତ ହୋଇଥିବା ୪୮ ଗୋଟି ବୁଝାମଣାପତ୍ର ମଧ୍ୟରୁ ଟ.୧୯,୨୮୨.୪୮ କୋଟି ପୁଞ୍ଜି ବିନିଯୋଗ କରି ୨୮ ଗୋଟି ପ୍ରକଳ୍ପ ଆଂଶିକ ଉତ୍ପାଦନ କଲେଣି, ଯହିଁରେ ପ୍ରତ୍ୟକ୍ଷ ଓ ପରୋକ୍ଷଭାବେ ୪୭୧୮୧ ଜଣ ବ୍ୟକ୍ତି ନିଯୁକ୍ତି ପାଇଛନ୍ତି । ସୂଚନା ପ୍ରଯୁକ୍ତି ଏବଂ ସୂଚନା ପ୍ରଯୁକ୍ତି ସେବା କ୍ଷେତ୍ରରେ ଆମ ରାଜ୍ୟରେ ପୁଞ୍ଜିନିବେଶ ପାଇଁ ଅନେକ ଉଦ୍ୟୋଗୀ ଆଗ୍ରହ ପ୍ରକାଶ କରିଛନ୍ତି । ବୃହତ୍ ତଥା ବହୁ ଦେଶୀୟ କମ୍ପାନୀ ଯଥା- ପୋସ୍କୋ, ଆର୍ସେଲର ମିତ୍ତଲ, ଜିନ୍ଦାଲ ଷ୍ଟିଲ ଆଣ୍ଡ ପାୱାର, ଜିନ୍ଦାଲ ଷ୍ଟେନ୍‌ଲେସ୍, ଆଦିତ୍ୟ ବିର୍ଲା ଗ୍ରୁପ ଏବଂ ବେଦାନ୍ତ ଆଲୁମିନା ସେମାନଙ୍କର ଶିଳ୍ପ ସ୍ଥାପନ ପାଇଁ ସମସ୍ତ ପ୍ରସ୍ତୁତି ଆରମ୍ଭ କରିସାରିଛନ୍ତି ।

ଦୀର୍ଘସୂତ୍ରୀ ଶିଳ୍ପାୟନ ପାଇଁ ଉଚ୍ଚମାନର ଶିଳ୍ପ ଓ ସାମାଜିକ ଭିତ୍ତିଭୂମି ଅପରିହାର୍ଯ୍ୟ । ପବ୍ଲିକ୍ ପ୍ରାଇଭେଟ ପାଟନରସିପ୍‌ରେ ଉପରୋକ୍ତ ଶିଳ୍ପଭିତ୍ତିଭୂମି ଏବଂ ସାମାଜିକ ଭିତ୍ତିଭୂମିର ଉନ୍ନତିକରଣ କରାଯାଉଅଛି । ରାଜ୍ୟରେ ଭିତ୍ତିଭୂମିର ବିକାଶ ପାଇଁ ଘରୋଇ ପୁଞ୍ଜିନିବେଶ ପାଇଁ ଯୋଜନା ଓ ସମନ୍ୱୟ ବିଭାଗ ଅଧୀନରେ ଏକ ପିପିପି (ପବ୍ଲିକ ପ୍ରାଇଭେଟ ପାଟନରସିପ୍) ସେଲ ଗଠନ କରାଯାଇଛି ।

ରାସାୟନିକ ଏବଂ ପେଟ୍ରୋରସାୟନ କ୍ଷେତ୍ରରେ ଘରୋଇ ତଥା ବିଦେଶୀ ପୁଞ୍ଜି ନିବେଶ ପାଇଁ ଭାରତୀୟ ତୈଳ ନିଗମର ସହାୟତାରେ ରାଜ୍ୟରେ ଏକ ପେଟ୍ରୋଲିୟମ, ରାସାୟନିକ ଏବଂ ପେଟ୍ରୋରସାୟନ ପୁଞ୍ଜିନିବେଶ ଅଞ୍ଚଳ (ପିସିପିଆଇଆର) ପାରାଦ୍ୱୀପରେ ସ୍ଥାପନ ପାଇଁ ପ୍ରସ୍ତାବ ଅଛି । ସମ୍ପୂର୍ଣ୍ଣ କାର୍ଯ୍ୟକ୍ଷମ ହେଲେ ଏହାର ବାର୍ଷିକ କାରବାର ପରିମାଣ ପ୍ରାୟ ଟ.୪୨୩,୫୦୦ କୋଟି ହେବା ସଂଗେସଂଗେ ବାର୍ଷିକ ରପ୍ତାନୀ ଦ୍ରବ୍ୟର ପରିମାଣ ପ୍ରାୟ ୪୩,୦୦୦ କୋଟି ଟଙ୍କା ହେବ । ଏହା ପ୍ରାୟ ବାର୍ଷିକ ୪୨,୦୦୦ କୋଟି ଟଙ୍କାର ରାଜସ୍ୱ ପ୍ରଦାନ କରିବ ଯାହାକି ଆଞ୍ଚଳିକ ତଥା ଜାତୀୟ ଅର୍ଥନୀତିକୁ ସୁଦୃଢ଼ କରିବାରେ ସହାୟକ ହେବ । ଉପରୋକ୍ତ ଅଞ୍ଚଳରେ ପ୍ରତ୍ୟକ୍ଷ ଭାବେ ୨.୨୭ ଲକ୍ଷ ଏବଂ ପରୋକ୍ଷଭାବେ ୪.୨୧ ଲକ୍ଷ ଲୋକ ନିଯୁକ୍ତି ପାଇବାରେ ସହାୟକ ହେବ ।

ରାଜ୍ୟର ରପ୍ତାନୀ ସୁଯୋଗକୁ ଦୃଷ୍ଟିରେ ରଖି ଏକ ରପ୍ତାନୀ ନୀତି ପ୍ରଣୟନ କରାଯିବା ପାଇଁ ପଦକ୍ଷେପ ନିଆଯାଉଛି ।

ବର୍ତ୍ତମାନ ନିବେଶିତ ହେଉଥିବା ପୁଞ୍ଜିର ପରିମାଣକୁ ଦୃଷ୍ଟିରେ ରଖି ବୃହତ, ମଧ୍ୟମ ଏବଂ କ୍ଷୁଦ୍ର ଶିଳ୍ପ ସଂସ୍ଥାମାନଙ୍କ ଉନ୍ନୟନ ବିଶେଷ କରି ଆନୁଷଙ୍ଗିକ ଏବଂ ସହାୟକ ଶିଳ୍ପ କ୍ଷେତ୍ରରେ ପୁଞ୍ଜି ପ୍ରକ୍ରିୟାକୁ ଯଥେଷ୍ଟ ଗୁରୁତ୍ୱ ଦିଆଯାଉଛି ଏବଂ ଅତି କ୍ଷୁଦ୍ର, କ୍ଷୁଦ୍ର ଓ ମଧ୍ୟମବର୍ଗର ଶିଳ୍ପର ବିକାଶ ନିମନ୍ତେ ଏକ ଶିଳ୍ପ ନୀତିର ପ୍ରଣୟନ ପାଇଁ ପଦକ୍ଷେପ ନିଆହେଉଛି ।

ରାଜ୍ୟ ତଥା ଦେଶରେ ବର୍ତ୍ତମାନ ଓ ଭବିଷ୍ୟତରେ ଆସୁଥିବା ଶିଳ୍ପାନୁଷ୍ଠାନଗୁଡ଼ିକର ବୈଷୟିକ ମାନବସମ୍ବଳ ଚାହିଦାକୁ ଦୃଷ୍ଟିରେ ରଖି ରାଜ୍ୟ ବୈଷୟିକ ଶିକ୍ଷା ଓ ତାଲିମ ନିର୍ଦ୍ଦେଶାଳୟ, କଟକ ରାଜ୍ୟରେ ଇଞ୍ଜିନିୟରିଂ ସ୍କୁଲ, ପଲିଟେକ୍‌ନିକ୍, ଶିଳ୍ପ ତାଲିମ ଅନୁଷ୍ଠାନ/ କେନ୍ଦ୍ର ମାଧ୍ୟମରେ ମାନବ ସମ୍ବଳ ପ୍ରସ୍ତୁତ କରୁଅଛନ୍ତି । ଶିଳ୍ପ ତାଲିମ କାର୍ଯ୍ୟକ୍ରମକୁ ଉତ୍କର୍ଷ ମାନର କରିବା ପାଇଁ ଭାରତ ସରକାର ତଥା ବିଶ୍ୱବ୍ୟାଙ୍କ ସହାୟତାରେ ୨୦୦୫-୨୦୦୬ ଆର୍ଥିକ ବର୍ଷରୁ ରାଜ୍ୟର ସରକାରୀ ଶିଳ୍ପ ତାଲିମ ଅନୁଷ୍ଠାନମାନଙ୍କୁ ଉତ୍କର୍ଷ ମାନର ଅନୁଷ୍ଠାନଭାବେ ଉନ୍ନୀତ କରାଯାଉଅଛି । ଗ୍ରାମୀଣ ଗରିବ ଯୁବକଯୁବତୀମାନଙ୍କୁ ବୈଷୟିକ ତାଲିମ ପ୍ରଦାନର ସୁଯୋଗ ଦେବା ନିମିତ୍ତ ଜିଲ୍ଲା ଓ ବ୍ଲକ୍ ସ୍ତରରେ ଆଇ.ଟି.ଆଇ ଏବଂ ପଲିଟେକ୍‌ନିକ୍ ସ୍ଥାପନ କରିବା ପାଇଁ ଶିକ୍ଷିତ ଉଦ୍ୟୋଗୀମାନଙ୍କୁ ପ୍ରୋତ୍ସାହିତ କରାଯାଉଅଛି । ଆଇ.ଟି.ଆଇ. ଓ ପଲିଟେକ୍‌ନିକ୍‌ମାନଙ୍କର ପାଠ୍ୟକ୍ରମର ଗୁଣାତ୍ମକ ମାନ ବୃଦ୍ଧି କରାଇ ଏହାକୁ ନିଯୁକ୍ତିଭିତ୍ତିକ କରିବା ପାଇଁ ଶିଳ୍ପାନୁଷ୍ଠାନ ଓ ବାଣିଜ୍ୟ ସଂସ୍ଥାମାନଙ୍କୁ ଅନୁଷ୍ଠାନର ପାଠ୍ୟକ୍ରମ ଖସଡ଼ାରେ ସଂଶ୍ଳିଷ୍ଟ କରାଯାଉଛି ।

ରାଜ୍ୟରେ ଶିଳ୍ପର ବିକାଶ ଓ ଉନ୍ନୟନ ନିମନ୍ତେ ଶିଳ୍ପ ବିଭାଗ ଅଧୀନରେ ଚାରିଗୋଟି ନିର୍ଦ୍ଦେଶାଳୟ ଯଥା- ଶିଳ୍ପ ନିର୍ଦ୍ଦେଶାଳୟ, ହସ୍ତ ଏବଂ କୁଟୀର ଶିଳ୍ପ ନିର୍ଦ୍ଦେଶାଳୟ, ବୈଷୟିକ ଶିକ୍ଷା ଓ ତାଲିମ ନିର୍ଦ୍ଦେଶାଳୟ ଏବଂ ରପ୍ତାନୀ ଉନ୍ନୟନ ଓ ବାଣିଜ୍ୟ ନିର୍ଦ୍ଦେଶାଳୟ ଅଛି । ଉପରୋକ୍ତ ଚାରିଗୋଟି ନିର୍ଦ୍ଦେଶାଳୟ ସମେତ ରାଜ୍ୟର ଶିଳ୍ପର ବିକାଶ ଓ ପ୍ରୋତ୍ସାହନ ପାଇଁ ଶିଳ୍ପ ବିଭାଗ ଅଧୀନରେ କେତୋଟି ନିଗମ କାର୍ଯ୍ୟ କରୁଛି ।

### କ. ଶିଳ୍ପ ନିର୍ଦ୍ଦେଶାଳୟ, ଓଡ଼ିଶା, କଟକ

### ୧.୧ କ୍ଷୁଦ୍ର, ମଧ୍ୟମ ଓ ବୃହତ୍ ଶିଳ୍ପ ପ୍ରତିଷ୍ଠା ପାଇଁ ପ୍ରୋତ୍ସାହନ

**ବିଦ୍ୟୁତ୍ ଶୁଳ୍କ ଦେୟ ଛାଡ଼**

୧୧୦ କିଲୋ ଭୋଲ୍‌ଟ ଆମ୍ପିୟର କଣ୍ଟ୍ରାକ୍ଟ ଡିମାଣ୍ଡ ପର୍ଯ୍ୟନ୍ତ ନୂତନ ଶିଳ୍ପ ସଂସ୍ଥାମାନେ ଏବଂ ଶକ୍ତି ପ୍ରକଳ୍ପ ପ୍ରତିଷ୍ଠା ନିମନ୍ତେ ବିଦ୍ୟୁତ୍ ଶକ୍ତି ଯୋଗାଣ ଦିନଠାରୁ/ପ୍ରକଳ୍ପ ଆରମ୍ଭ ଦିନଠାରୁ ୫ ବର୍ଷ ପାଇଁ ବିଦ୍ୟୁତ୍ ଶୁଳ୍କ ଛାଡ଼ ପାଇବେ । ୨୦୦୭-୦୮ ମସିହାରେ ଚାରିଗୋଟି ଶିଳ୍ପ ସଂସ୍ଥାକୁ ବିଦ୍ୟୁତ୍ ଶୁଳ୍କ ଦେୟ ଛାଡ଼ପାଇଁ ସୁପାରିଶ୍ କରାଯାଇଅଛି । ୨୦୦୮-୦୯ ମସିହାର ୨୦ ଗୋଟି ଶିଳ୍ପ ସଂସ୍ଥା ପାଇଁ ଏହା ଲକ୍ଷ୍ୟ ରଖାଯାଇଛି ।

### ୧.୨ ଚାଷଜମିକୁ ଶିଳ୍ପ ପାଇଁ ବ୍ୟବହୃତ ସକାଶେ ଦେବାକୁ ଥିବା ଅଧିକ ମୂଲ୍ୟ ଛାଡ଼ ପାଇଁ ପାତ୍ରତା ପ୍ରମାଣପତ୍ର

ଓଡ଼ିଶା ଲ୍ୟାଣ୍ଡ ରିଫର୍ମ ଆଇନ ଅନ୍ତର୍ଗତ ଉପବିଭାଗ/୭୩(ଗ) ଅନୁଯାୟୀ ନୂତନ ଏବଂ ବିଦ୍ୟମାନ ଶିଳ୍ପ ସଂସ୍ଥା ସମ୍ପ୍ରସାରଣ/ ଆଧୁନିକୀକରଣ/କାଳାନ୍ତରଣ ନିମନ୍ତେ ଉପବିଭାଗ-୮ (କ) ଅଧୀନରେ ଦେବାକୁ ଥିବା ଅଧିକ ମୂଲ୍ୟ ଛାଡ଼ ପାଇବେ । ୨୦୦୭-୦୮ ମସିହାରେ ୪୨ ଗୋଟି ଶିଳ୍ପ ସଂସ୍ଥାକୁ ପାତ୍ରତା ପ୍ରମାଣପତ୍ର ପ୍ରଦାନ କରାଯାଇଅଛି । ୨୦୦୮-୦୯ ମସିହାର ୪୦ ଗୋଟି ଶିଳ୍ପ ସଂସ୍ଥା ପାଇଁ ଏହା ପ୍ରଦାନ କରାଯିବାର ଲକ୍ଷ୍ୟ ରଖାଯାଇଛି ।

### ୧.୩ କଞ୍ଚାମାଲ ଯୋଗାଣ

୨୦୦୮ ମସିହାରେ ୩,୪୩,୭୧୫ ମେଟ୍ରିକ୍ ଟନ୍ କଞ୍ଚାମାଲ ୬ ଗୋଟି ଶିଳ୍ପ ସଂସ୍ଥାକୁ ଯୋଗାଇ ଦିଆଯାଇଅଛି । ୨୦୦୮ ମସିହା ପାଇଁ ୧୫.୦୦ ଲକ୍ଷ ମେଟ୍ରିକ୍ ଟନ୍‌ର ବିଭିନ୍ନ ରକମର କଞ୍ଚାମାଲ ୫ ଗୋଟି ଶିଳ୍ପ ସଂସ୍ଥାକୁ ଦେବାପାଇଁ ଲକ୍ଷ୍ୟ ରଖାଯାଇଛି ।

### ୧.୪ ସୁଧ ଅନୁଦାନ

୧.୪.୨୦୦୩ରୁ ୩୧.୩.୨୦୦୭ ମଧ୍ୟରେ ଉତ୍ପାଦନକ୍ଷମ ନୂତନ କ୍ଷୁଦ୍ର ଶିଳ୍ପ ସଂସ୍ଥାମାନେ ଶିଳ୍ପ ସ୍ଥାପନ ପାଇଁ ନେଇଥିବା ଟରମ ଲୋନ୍ Expansion/Modernization/Diversification କରିବା ପାଇଁ ସମସ୍ତ ବିଦ୍ୟମାନ କ୍ଷୁଦ୍ର ଶିଳ୍ପ ଓ ଥଇଥାନ ପାଇଁ କ୍ଷୁଦ୍ର ରଗ୍‌ଣ ଶିଳ୍ପଦ୍ୱାରା ନେଇଥିବା ଅତିରିକ୍ତ (Term Loan) ଉପରେ ୫% ସୁଧ ଅନୁଦାନ ୨୦୦୭ ବର୍ଷ ପାଇଁ କ୍ଷୁଦ୍ର ଶିଳ୍ପମାନଙ୍କୁ ସର୍ବାଧିକ ୨୦ ଲକ୍ଷ ଟଙ୍କା ଏବଂ ଟିନିମାନଙ୍କୁ ୧୦ ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଅଛି । ୨୩ ଗୋଟି କ୍ଷୁଦ୍ର ଶିଳ୍ପକୁ ୯,୫୯,୫୨୮.୦୦ କେ.ବି.କେ.

ଜିଲ୍ଲାରେ ଏବଂ ୩୫ ଗୋଟି କ୍ଷୁଦ୍ର ଶିଳ୍ପ ସଂସ୍ଥାକୁ ୧୪,୦୪,୩୬୨.୦୦ ଟଙ୍କାର କେ.ବି.କେ. ଜିଲ୍ଲା ବ୍ୟତୀତ ୨୦୦୭-୦୮ ମସିହାରେ ମଞ୍ଜୁର କରାଯାଇଛି ।

### ୧.୫ ବିକ୍ରିକର ପ୍ରତିପୂରଣ ପ୍ରାବଧାନ

କେ.ବି.କେ. ତଥା ପଛୁଆ ବର୍ଗ ଅଞ୍ଚଳର ସମସ୍ତ ନୂତନ କ୍ଷୁଦ୍ର ଶିଳ୍ପ ଓ ଇ.ଏମ୍.ଡି. କରିଥିବା ବିଦ୍ୟମାନ କ୍ଷୁଦ୍ରଶିଳ୍ପ ଏଥିପାଇଁ ଯୋଗ୍ୟ ବିବେଚିତ ହେବେ । ଅନ୍ୟ ଅଞ୍ଚଳପାଇଁ କେବଳ ଅନୁମୋଦିତ (cluster) ଅଗ୍ରାଧିକାରଭିତ୍ତିକ ଶିଳ୍ପ ସହାୟକ ଶିଳ୍ପମାନେ ୫ ବର୍ଷ ପାଇଁ ଏହି ଅନୁଦାନ ପାଇପାରିବେ । ଏହି ଅନୁଦାନ ସର୍ବାଧିକ ସ୍ଥିର ମୂଳ ପୁଞ୍ଜିର ୧୦୦ ପ୍ରତିଶତ ପର୍ଯ୍ୟନ୍ତ ଦିଆଯାଇପାରିବ । ୨୦୦୭-୦୮ ମସିହାରେ ଏକ ଗୋଟି ଶିଳ୍ପ ସଂସ୍ଥାକୁ ଟ.୨,୨୨,୪୭୫.୦୦ ମଞ୍ଜୁର କରାଯାଇଅଛି ।

### ୧.୬ ଅତିକ୍ଷୁଦ୍ର/କ୍ଷୁଦ୍ର/ମଧ୍ୟମ ଶିଳ୍ପ

୨୦୦୭-୦୮ ଆର୍ଥିକ ବର୍ଷରେ ରାଜ୍ୟରେ ୫୦୦୦ ଗୋଟି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା ପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଥିଲା ଏବଂ ଏଥିରେ ୩୦,୦୦୦,୦୦ ଲକ୍ଷ ଟଙ୍କାର ପୁଞ୍ଜି ବିନିଯୋଗ କରାଯାଇ ୪୫,୦୦୦ ଜଣଙ୍କୁ ନିଯୁକ୍ତି ସୁଯୋଗ ଦେବାର ଲକ୍ଷ୍ୟ ରଖାଯାଇଥିଲା । ଉକ୍ତ ଆର୍ଥିକ ବର୍ଷରେ ୪,୭୧୦ଟି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରାଯାଇଛି ଏବଂ ଏଥିରେ ୨୯,୫୫୧.୧୮ ଲକ୍ଷ ଟଙ୍କାର ପୁଞ୍ଜି ବିନିଯୋଗ କରାଯାଇ ୨୩,୩୦୧ ଜଣଙ୍କୁ ସୁବିଧା ପ୍ରଦାନ କରାଯାଉଛି ।

### ୧.୭ ଅସ୍ଥାୟୀ-ସ୍ଥାୟୀ ପଞ୍ଜିକରଣ

ରାଜ୍ୟରେ ୨୦୦୭-୦୮ ଆର୍ଥିକ ବର୍ଷରେ କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା ପାଇଁ ୮୮୦୦ ଗୋଟି ଅସ୍ଥାୟୀ ଓ ୨୦୦୦ ଗୋଟି ସ୍ଥାୟୀ ପଞ୍ଜିକୃତ ପ୍ରମାଣପତ୍ର ଯୋଗାଇ ଦେବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଥିଲା । ମାତ୍ର ଫେବୃଆରୀ ୨୦୦୮ ସୁଦ୍ଧା ୩୭୨୨ ଗୋଟି ଅସ୍ଥାୟୀ ପଞ୍ଜିକୃତ ପ୍ରମାଣପତ୍ର ଓ ୬୫୯ ଗୋଟି ସ୍ଥାୟୀ ପଞ୍ଜିକୃତ ପ୍ରମାଣପତ୍ର ଯୋଗାଇ ଦିଆଯାଇଛି ।

### ୧.୮ ପୁଞ୍ଜି ବିନିଯୋଗ ଅନୁଦାନ

ରାଜ୍ୟର ବିଭିନ୍ନ ଶିଳ୍ପନୀତି ଅନୁଯାୟୀ କ୍ଷୁଦ୍ର, ମଧ୍ୟମ ଓ ବୃହତ ଶିଳ୍ପ ସଂସ୍ଥାଗୁଡ଼ିକୁ ପୁଞ୍ଜି ବିନିଯୋଗ ଅନୁଦାନ ମଞ୍ଜୁର କରାଯାଇଥାଏ । ୨୦୦୭-୦୮ ଆର୍ଥିକ ବର୍ଷରେ କୌଣସି କ୍ଷୁଦ୍ର ଶିଳ୍ପ ଏବଂ ମଧ୍ୟମ ଓ ବୃହତ୍ ଶିଳ୍ପ ସଂସ୍ଥାକୁ ପୁଞ୍ଜି ବିନିଯୋଗ ଟ.୮୮,୦୦,୧୦୦/- ଅନୁଦାନ ମଞ୍ଜୁର କରାଯାଇଛି ।

**୨. ପ୍ରଧାନମନ୍ତ୍ରୀଙ୍କ ରୋଜଗାର ଯୋଜନା :** ଏହା ଏକ କେନ୍ଦ୍ରର କାର୍ଯ୍ୟକ୍ରମ । ଆତ୍ମନିଯୁକ୍ତି, ଶିଳ୍ପ କ୍ଷେତ୍ରରେ ନିଯୁକ୍ତି ସୃଷ୍ଟି କରିବା, ସେବା ଓ ବ୍ୟବସାୟିକ କ୍ଷେତ୍ରରେ ନିଯୁକ୍ତି ପାଇଁ ୧୯୯୩-୯୪ ମସିହାରୁ କାର୍ଯ୍ୟକାରୀ ହେଉଅଛି । ୨୦୦୭-୦୮ ମସିହାରେ ଏହି ପ୍ରକଳ୍ପର ବ୍ୟୟ ବର୍ଦ୍ଧିତ କରାଯାଇ ୫ ଲକ୍ଷ ଟଙ୍କା କରାଯାଇଅଛି । ପୂର୍ବରୁ ଏହା ୨ ଲକ୍ଷ ଟଙ୍କାରେ ବ୍ୟବସାୟ ଓ ସେବାପାଇଁ ଉଦ୍ଦିଷ୍ଟ ଥିଲା ।

### ୨.୧ ସଫଳତା

ଏହି ଯୋଜନାରେ ୨୦୦୮ ମାର୍ଚ୍ଚ ସୁଦ୍ଧା ୧,୨୮,୭୯୮ ଜଣ ହିତାଧିକାରୀଙ୍କୁ ୮୦୩.୬୧ କୋଟି ଟଙ୍କା ପ୍ରଦାନ କରାଯାଇ ୧,୦୯,୬୬୯ ଗୋଟି କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରାଯାଇ ୨,୨୬,୮୧୦ ଲୋକଙ୍କୁ ନିଯୁକ୍ତି କରାଯାଇଛି ।

୨୦୦୬-୨୦୦୭ ଓ ୨୦୦୭-୨୦୦୮ ବର୍ଷର ପ୍ରଧାନମନ୍ତ୍ରୀ ରୋଜଗାର ଯୋଜନାରେ ସଫଳତା ନିମ୍ନରେ ପ୍ରଦାନ କରାଯାଇଛି ।

| କ୍ର.ନଂ. | ବିବରଣୀ | ୨୦୦୬-୦୭ | ୨୦୦୭-୦୮ |
|---|---|---|---|
| ୧. | ଧାର୍ଯ୍ୟ ଲକ୍ଷ୍ୟ | ୧୫୬୦୦ | ୧୨୫୦୦ |
| ୨. | ବ୍ୟାଙ୍କମାନଙ୍କଦ୍ୱାରା କେତେଗୋଟି ଦରଖାସ୍ତ ମଞ୍ଜୁର ହୋଇଛି | ୧୬୯୦୦ | ୧୩୨୮୭ |

| | | | |
|---|---|---|---|
| ୩. | କେତେ ଲକ୍ଷ ଟଙ୍କା ମଞ୍ଜୁର କରା ହୋଇଛି | ୧୦୯୬୨.୧୫ | ୧୨୬୦୭.୧୯ |
| ୪. | କେତେଗୋଟି ଦରଖାସ୍ତ ଅର୍ଥ ମଞ୍ଜୁର ହୋଇଛି | ୧୪୫୨୭ | ୧୧୦୮୨ |
| ୫. | କେତେ ଲକ୍ଷ ପ୍ରଦାନ କରାଯାଇଅଛି | ୮୫୭୨.୨୯ | ୭୪୦୮.୪୪ |
| ୬. | କେତେଗୋଟି ଶିଳ୍ପ ପ୍ରତିଷ୍ଠା ହୋଇଅଛି | ୧୩୯୦୬ | ୨୬୦୧ |
| ୭. | କେତେ ନିଯୁକ୍ତି ପାଇଛନ୍ତି | ୨୮୫୧୪ | ୫୪୦୯ |

**ଆର୍ଥିକ**

ସଚେତନା ଶିବିର କରିବା ପାଇଁ କେନ୍ଦ୍ର ସରକାରଙ୍କ ମୋଟ ଟ.୭,୮୧,୨୫୦ ଟଙ୍କା ଦେବା ପରିବର୍ତ୍ତେ ଟ.୧୦,୫୭,୧୬୩ ଟଙ୍କା ପ୍ରଦାନ କରିଛନ୍ତି । ଏହି ଅର୍ଥ ହିତାଧିକାରୀମାନଙ୍କ ତାଲିମ ଓ କଣ୍ଟିଜେନ୍‌ସି ପାଇଁ ବ୍ୟୟ କରାଯିବ । ୨୦୦୭-୦୮ ମସିହାର କାର୍ଯ୍ୟକ୍ରମ ସରିବା ପରେ ବ୍ୟୟ ପ୍ରମାଣପତ୍ର ପ୍ରଦାନ କରାଯିବ ।

**୩. ଶିଳ୍ପଗୁଚ୍ଛ ଉପକ୍ରମଣିକା**

ଆର୍ଥିକ ଅବସ୍ଥାର ସ୍ୱଚ୍ଛଳତା ଏବଂ ସମାନ ବିକାଶ କରିବା ନିମନ୍ତେ ଅତି କ୍ଷୁଦ୍ର, କ୍ଷୁଦ୍ର ଏବଂ ମଧ୍ୟମ ଧରଣର ଶିଳ୍ପ ଭିତ୍ତିଭୂମି ସୃଷ୍ଟି କରିଥାଏ । ଶିଳ୍ପର ଆକୃତି ଏବଂ ସେମାନଙ୍କର ଅର୍ଥନୈତିକ ଆଗ୍ରହ, ଶିଳ୍ପ ନିର୍ଦ୍ଧାରଣ ଶକ୍ତି ଯୋଗାଯୋଗ, ସଠିକ୍ ସମ୍ବାଦ ସମସ୍ୟା ସୃଷ୍ଟି କରିଥାଏ । ବେଳେ ବେଳେ ଅତିକ୍ଷୁଦ୍ର, କ୍ଷୁଦ୍ର ଓ ବୃହତ୍ ଶିଳ୍ପମାନଙ୍କର ସମନ୍ୱୟ ଏବଂ ସହଯୋଗୀ ଶିଳ୍ପାନୁଷ୍ଠାନ ବାଧା ସୃଷ୍ଟି କରିଥାଏ । ଶିଳ୍ପଗୁଚ୍ଛ ସଂଯୋଗ, ଭୌଗୋଳିକ ଏବଂ ଆଂଶିକ ସୁବିଧା ଓ ବିପଦଗୁଡ଼ିକ ଶିଳ୍ପ ପ୍ରତିଷ୍ଠାନ ସମୃଦ୍ଧି ପାଇଁ ସମର୍ଥକ ହୋଇଥାଏ ।

କେନ୍ଦ୍ର ସରକାର ପୂର୍ବରୁ ଅତି କ୍ଷୁଦ୍ର, କ୍ଷୁଦ୍ର ଶିଳ୍ପଗୁଚ୍ଛ ବିକାଶ କାର୍ଯ୍ୟକ୍ରମ, କ୍ଷୁଦ୍ର ଶିଳ୍ପ ଶିଳ୍ପଗୁଚ୍ଛ ବିକାଶ କାର୍ଯ୍ୟକ୍ରମ ଘୋଷଣା କରିଛନ୍ତି - ଯାହାକି କୋମଳ ଏବଂ କଠିନ ଉତ୍ପାଦନ ପାଇଁ ଆର୍ଥିକ ସହାୟତା ପ୍ରଦାନ କରିଥାଏ ।

**୩.୨ ସଫଳତା**

**ଫିଜିକାଲ**

୨୦୦୭-୦୮ ମସିହାରେ ଅତିରିକ୍ତ ୫୧ଟି ଶିଳ୍ପଗୁଚ୍ଛ ଚିହ୍ନଟ କରାଯାଇଅଛି । କଟକ, ଭୁବନେଶ୍ୱରରେ ଔଷଧୀୟ ଶିଳ୍ପଗୁଚ୍ଛ ଏମ୍.ଏମ୍.ଇ., ସି.ଡି.ପି., ଏମ୍.ଏସ୍.ଏମ୍. ଇ କେନ୍ଦ୍ର ସରକାର ସହାୟତାରେ ଅନୁମୋଦିତ ହୋଇଛି । ଏତଦ୍‌ବ୍ୟତୀତ ଗଞ୍ଜାମରେ କାଜୁ ଶିଳ୍ପଗୁଚ୍ଛ, ବାଲେଶ୍ୱର ଏବଂ କେନ୍ଦୁଝରରେ ଏନ୍.ଟି.ଏଫ୍.ସି. କ୍ଲଷ୍ଟର ପାଇଁ ଚିହ୍ନିତ ଚିଠା ବିବରଣୀ ପ୍ରସ୍ତୁତ ହୋଇଛି । ସି.ଏସ୍.ଆର୍.ଏମ୍. ଗଜପତିଙ୍କ ସହାୟତାରେ ଦଶଗୋଟି ଶିଳ୍ପ ପାଇଁ ନିର୍ଘଣ୍ଟର ପାଠ୍ୟ ପ୍ରସ୍ତୁତ ହେଉଛି ।

**ଆର୍ଥିକ**

୨୦୦୭-୦୮ ମସିହାରେ ମାଇକ୍ରୋ ଏବଂ ସ୍ମଲ ଏଣ୍ଟରପ୍ରାଇଜ୍ କ୍ଲଷ୍ଟର ଡେଭଲପମେଣ୍ଟ କାର୍ଯ୍ୟକ୍ରମ ନାମରେ ଏକ ନୂତନ ବଜେଟ୍ ହେଡ୍ କରାଯାଇ ଶିଳ୍ପଗୁଚ୍ଛ ବିକାଶ ନିମନ୍ତେ ଗୋଲ୍‌ର ପୁଞ୍ଜି ସୃଷ୍ଟି କରାଯାଇଅଛି । ବାଲେଶ୍ୱର ପ୍ଲାଷ୍ଟିକ ଶିଳ୍ପଗୁଚ୍ଛ ଏବଂ ବରଗଡ଼ ଓ ଏହାର ଆଖପାଖ ଅଞ୍ଚଳରେ ଚାଉଳ ଶିଳ୍ପଗୁଚ୍ଛ ପାଇଁ ଗୋଲ୍ ୭.୨୫ ଲକ୍ଷ ଅର୍ଥ ମଞ୍ଜୁର କରିଛନ୍ତି ।

**୪. ଜିଲ୍ଲାସ୍ତରୀୟ ସିଙ୍ଗିଲ ଉଇଣ୍ଡୋ ନୋଡ଼ାଲ ଏଜେନ୍‌ସି**

ଘରୋଇ ଏବଂ ବିଦେଶୀ ପୁଞ୍ଜି ବିନିଯୋଗକାରୀମାନଙ୍କୁ ଆକୃଷ୍ଟ କରି ରାଜ୍ୟରେ ଦୃଢ଼ ଶିଳ୍ପ ବିକାଶ କରିବା ନିମନ୍ତେ ରାଜ୍ୟ ସରକାର ସିଙ୍ଗିଲ ଉଇଣ୍ଡୋ କ୍ଲିୟରାନ୍‌ସ ମେକାନିଜିମ୍ ଗ୍ରହଣ କରିଅଛନ୍ତି ।

ଏହି ସିଷ୍ଟତାର ମୁଖ୍ୟ ଲକ୍ଷ୍ୟ-

(୧) ଶୀଘ୍ର ଏବଂ ଗୋଟିଏ ଜାଗାରେ ଶିଳ୍ପ ପ୍ରକଳ୍ପ ନିଷ୍ପତ୍ତି

(୨) ଉଦୀୟମାନ ଶିଳ୍ପପତିମାନଙ୍କୁ ଶୀଘ୍ର ପୁଞ୍ଜି ବିନିଯୋଗ ନିଷ୍ପତ୍ତି ନେବାପାଇଁ ଶିଳ୍ପ ସଂକ୍ରାନ୍ତୀୟ ପ୍ରକଳ୍ପର ତଥ୍ୟ ଏକ ଜାଗାରେ ମିଳିବା ।

ଏହି ଉଦ୍ଦେଶ୍ୟରେ ଓଡ଼ିଶା ଇଣ୍ଡଷ୍ଟ୍ରିଜ ଆଇନ୍ ୨୦୦୪ ଏବଂ ଓଡ଼ିଶା ଇଣ୍ଡଷ୍ଟ୍ରିଜ୍ ଫାସିଲେସନ୍ ନୀତି ୨୦୦୫ ଘୋଷଣା କରିଅଛନ୍ତି । ଜିଲ୍ଲା ଶିଳ୍ପ କେନ୍ଦ୍ରଗୁଡ଼ିକୁ ଏହାର ନୋଡ଼ାଲ ଏଜେନ୍ସି ଭାବରେ ଘୋଷଣା କରାଯାଇଅଛି ।

**୪.୧ ସଫଳତା**

କଟକ, ଜଗତପୁର, ଝାରସୁଗୁଡ଼ା ଏବଂ ଭୁବନେଶ୍ୱର ଭଳି ପାଇଲଟ୍ ଜିଲ୍ଲାଗୁଡ଼ିକରେ ଏହି ମେକାନିଜିମ୍ କାର୍ଯ୍ୟ କରୁଅଛି । ବର୍ତ୍ତମାନ ସୁଦ୍ଧା ୧୭୪ ଗୋଟି ଦରଖାସ୍ତ ସଂଗ୍ରହ କରାଯାଇଅଛି । ୨୦୦୭-୦୮ ମସିହାରେ କେନ୍ଦୁଝର, ଗଞ୍ଜାମ, ରାଉରକେଲା, ସୁନ୍ଦରଗଡ଼, ଅନୁଗୁଳ, ବାଲେଶ୍ୱର, ଜଗତପୁର, ଜଗତସିଂହପୁର, ସମ୍ବଲପୁର, ଢେଙ୍କାନାଳ ଏବଂ ରାୟଗଡ଼ା ଜିଲ୍ଲାରେ ଏହି ମେକାନିଜମ୍ କାର୍ଯ୍ୟକାରୀ କରିବାକୁ ନିଷ୍ପତ୍ତି କରାଯାଇଅଛି ।

**ଅର୍ଥନୈତିକ**

୨୦୦୭-୦୮ ମସିହାରେ ରାଜ୍ୟ ଯୋଜନାରେ ଶିଳ୍ପ ନିର୍ଦ୍ଦେଶାଳୟ ଦ୍ୱାରା ନିଉ ବଜେଟ୍ ହେଡ଼ ‘‘ଇମ୍ପ୍ଲିମେଣ୍ଟେସନ୍ ଆଣ୍ଡ ମନିଟରିଙ୍ଗ୍ ଅଫ୍ ସିଙ୍ଗିଲ୍ ଉଇଣ୍ଡୋ’’ କରାଯାଉଅଛି । ବର୍ତ୍ତମାନସୁଦ୍ଧା ଶିଳ୍ପ ନିର୍ଦ୍ଦେଶାଳୟ ଏବଂ ଜିଲ୍ଲା ଶିଳ୍ପ କେନ୍ଦ୍ର ସହାୟତାରେ ଭିତ୍ତିଭୂମି ଉନ୍ନତି ପାଇଁ ୧୬୧.୮୧ ଲକ୍ଷ ଟଙ୍କାର ମଞ୍ଜୁର କରାଯାଇଅଛି । ଇଡ଼କୋ ଆଣ୍ଡ୍ ଓ.ସି.ଏ.ସି.ଙ୍କୁ ଏହି ଅର୍ଥ ପ୍ରଦାନ କରାଯାଇଛି ।

**୫. ଖାଦ୍ୟ ପ୍ରକ୍ରିୟାକରଣ ଅଂଶ**

ନ୍ୟାସନାଲ୍ କନ୍‌ସେସନ୍ ବିଷୟରେ ଆଗ୍ରୋ ଏବଂ ଖାଦ୍ୟ ପ୍ରକ୍ରିୟାକରଣ ଶିଳ୍ପ ଶିଳ୍ପୋଦ୍ୟୋଗୀ ସପ୍ତାହ ପାଳନ କରିବା ଅବସରରେ ମାର୍ଚ୍ଚ ୮ ତାରିଖରେ ହୋଟେଲ ସ୍ୱସ୍ତି ପ୍ଲାଜାରେ ଏକ ସମ୍ମିଳନୀ ଆୟୋଜନ କରିଥିଲେ ।

ବାଲେଶ୍ୱର ଆଇ.ଇ. କଟକ ଏବଂ ଭୁବନେଶ୍ୱର ପରିଧି ମଧ୍ୟରେ ସମନ୍ୱୟ ଖାଦ୍ୟ ପ୍ରସ୍ତୁତି ପାର୍କ କରିବା ପାଇଁ ୧୩.୧୧.୨୦୦୭ରେ ଆଇ.ଟି.ସି. ଅର୍ଥ ବିନିଯୋଗ ପ୍ରସ୍ତାବ ପାଇଁ ବୈଠକ ହୋଇଥିଲା ।

ପ୍ରମୋସନ୍ ଅଫ୍ ପ୍ରସେସିଙ୍ଗ୍ ଫୁଡ୍ ଇଣ୍ଡଷ୍ଟ୍ରିଜ୍ ଇନ୍ ଓଡ଼ିଶା ସ୍ଥାପନ କରିବା ପାଇଁ ଇଣ୍ଟରପ୍ରିନିୟର ଟେକ୍ନୋଲୋଜି କ୍ରେଡ଼ିଟ୍ ଇନ୍ ଫ୍ୟାକ୍ଟର ବୈଠକ ୩.୧୦.୨୦୦୭ରେ ହୋଇଥିଲା ।

**୫.୧ ଏମ୍./ଏସ୍.- ଆର୍.ଏସ୍.ବି. ଟ୍ରାନ୍‌ସମିଶନଦ୍ୱାରା ଅଟୋ କମ୍ପୋନେଟ୍ ମାନୁଫାକ୍‌ଚରିଙ୍ଗ ୟୁନିଟ୍ ପ୍ରତିଷ୍ଠା**

ଏମ୍./ଏସ୍. - ଆର୍.ଏମ୍.ବି. ଟ୍ରାନ୍‌ସମିଶନ ଏଲ୍.ଟି.ଡି. ମାନିଆ ଚୌଦ୍ୱାରଠାରେ ଏକ ଅଟୋ କମ୍ପୋନେଟ୍ ତିଆରି ୟୁନିଟ୍ ସ୍ଥାପନ କରିବା ପାଇଁ ରାଜ୍ୟ ସରକାର ଏକ ବୁଝାମଣାପତ୍ର ୬.୧୨.୨୦୦୬ରେ ସ୍ୱାକ୍ଷର କରିଛନ୍ତି ।

୫.୨ ଘରୋଇ ସେକ୍ଟରଗୁଡ଼ିକର ତ୍ରୈମାସିକ କ୍ରୟ ବିବରଣୀ ନିୟମିତ ପ୍ରଦାନ କରୁଛନ୍ତି । ୨୦୦୭-୦୮ ବର୍ଷରେ ରାଜ୍ୟରେ ୮୬.୩୬ କୋଟି ଏବଂ ରାଜ୍ୟ ବାହାରେ ୪୭.୯୨ କୋଟି ଟଙ୍କାର କ୍ରୟ ହୋଇଛି ।

୫.୩ ଡ୍ରାଫ୍‌ଟ ପଲିସ୍ ଫର୍ ସ୍ପେସିୟାଲ୍ ଇକୋନମିକ୍ ଜୋନ୍ (ସ୍ୱତନ୍ତ୍ର ଅର୍ଥନୈତିକ ଜୋନ୍ ପାଇଁ ଚିଠା ପଲିସି) ଘରୋଇ ଏବଂ ବିଦେଶୀ ପୁଞ୍ଜି ଲଗାଣକାରୀଙ୍କୁ ଆକୃଷ୍ଟ କରିବା ପାଇଁ ସ୍ୱତନ୍ତ୍ର ଅର୍ଥନୈତିକ ଆଇନ୍ ଆକର୍ଷଣ କରୁଛି ।

ବର୍ତ୍ତମାନ ସୁଦ୍ଧା ଏସ୍.ଇ.ଜେଡ୍.ଦ୍ୱାରା ୧୪ଟି ଶିଳ୍ପ ପ୍ରତିଷ୍ଠା ହୋଇଛି ।

**୫.୪ ପୋଷ୍ଟ ମ୍ୟାନେଜମେଣ୍ଟ ରିଭ୍ୟୁ କମିଟି**

ଓଡ଼ିଶା ବନ୍ଦରଗୁଡ଼ିକର ପ୍ରସ୍ତୁତି କାର୍ଯ୍ୟ ତଦାରଖ ପାଇଁ ପି.ଏମ୍.ଆର୍.ସି. ୧୬.୪.୨୦୦୭ରେ ଗଠିତ ହୋଇଛି । ରାଉରକେଲା, ଝାରସୁଗୁଡ଼ା, କଳିଙ୍ଗନଗର ଏବଂ ସେହିଭଳି ରାଜ୍ୟର ଶିଳ୍ପାଞ୍ଚଳରେ ପିପିପିଦ୍ୱାରା ନିର୍ମିତ ଥାଇଲାଣ୍ଡ କଣ୍ଟେନ୍ନର ଡିପୋର ସୁବିଧା ସୁଯୋଗ ଦେଖିବା ପାଇଁ ଗୋଟିଏ କାର୍ଯ୍ୟକାରୀ ଦଳ ଗଠନ କରାଯାଇଅଛି ।

**୫.୫ ଡବ୍ଲ୍ୟୁ.ଟି. ଓ ଇସୁ**

୨୦୦୮ ମସିହା ଜାନୁଆରୀ ୯ ଓ ୧୦ ତାରିଖରେ ଭୁବନେଶ୍ୱରଠାରେ ଏଫ୍.ଆଇ.ସି.ସି.ଆଇ. ଏବଂ ଶିଳ୍ପ ବିଭାଗ ମିଳିତ ଭାବରେ ୱାର୍ଲଡ଼ ଟ୍ରେଡ଼ ଅରଗାନାଇଜେସନ୍ ସହିତ ବୈଠକରେ ଆଲୋଚନା କରିଛନ୍ତି ।

**୬. ଆନୁଷଙ୍ଗିକ ଶିଳ୍ପ ବିକାଶ ପାଇଁ ପଦକ୍ଷେପ**

ମେଣ୍ଟାଲ ସେକ୍ଟରରେ ଆନୁଷଙ୍ଗିକ ଶିଳ୍ପ ଏବଂ ଡାଉନ ଷ୍ଟ୍ରିମ୍ ଇଣ୍ଡଷ୍ଟ୍ରିଜ ବିକାଶ ପାଇଁ ପୁଞ୍ଜି ବିନିଯୋଗକାରୀଙ୍କୁ ଆକୃଷ୍ଟ କରିବା ନିମନ୍ତେ ବୃହତ ଶିଳ୍ପ ଏବଂ ମେଗା ଶିଳ୍ପର ବିକାଶ ନିମନ୍ତେ ପଥପ୍ରଦର୍ଶନ ଟିମ୍ ଓଡ଼ିଶାଦ୍ୱାରା ଚଳିତ ବର୍ଷ କରାଯାଇଥିବା ନିମ୍ନରେ ପ୍ରଦାନ କରାଗଲା ।

(୧) ୨୫.୦୭.୨୦୦୭ରେ ହରିଆନାର ହିସାର ଏବଂ ୨୬.୦୭.୨୦୦୭ରେ ପଞ୍ଜାବର ଲୁଧିଆନାରେ ପୁଞ୍ଜି ବିନିଯୋଗକାରୀ ବିକାଶ ଆନୁଷଙ୍ଗିକ ଶିଳ୍ପ ବିକାଶ ପଥ ପ୍ରଦର୍ଶନୀ କରାଯାଇଥିଲା ।

(୨) **ଏଫ୍.ପୋ ଓଡ଼ିଶା ୨୦୦୭**

ନଭେମ୍ବର ମାସ ୨ରୁ ୬, ୨୦୦୭ ପର୍ଯ୍ୟନ୍ତ ଭୁବନେଶ୍ୱରଠାରେ ଜାତୀୟ ସ୍ତରରେ ଶିଳ୍ପମେଳା ଅନୁଷ୍ଠିତ ହୋଇଥିଲା ।

(୩) ଟିମ୍ ଓଡ଼ିଶାଦ୍ୱାରା ଆଲୁକାଷ୍ଟ ୨୦୦୭ ରାଜସ୍ଥାନର ଜୟପୁରଠାରେ ଡିସେମ୍ବର ୧୦ରୁ ୧୨,୨୦୦୭ ଆନୁଷଙ୍ଗିକ ଶିଳ୍ପ ବିକାଶ ପାଇଁ ପଥପ୍ରାନ୍ତ ପଦର୍ଶନୀ କରାଯାଇଥିଲା ।

(୪) ଆନୁଷଙ୍ଗିକ ଶିଳ୍ପ ବିକାଶ ପାଇଁ ଟିମ୍ ଓଡ଼ିଶା ୨୦୦୮ ଇଣ୍ଡିଆ ଆଲୁମିନିୟମ ଗୋଟିଏ ଆନ୍ତର୍ଜାତିକ ପ୍ରଦର୍ଶନୀ ଏବଂ ସମ୍ମିଳନୀରେ ମୁମ୍ବାଇଠାରେ ଫେବୃଆରୀ ୨୦୦୮, ୨୨ରୁ ୨୪ ପର୍ଯ୍ୟନ୍ତ ଅଂଶଗ୍ରହଣ କରିଥିଲେ ।

(୫) ଟିମ୍ ଓଡ଼ିଶା ଫେବୃଆରୀ ୬ରୁ ୮, ୨୦୦୮ ପର୍ଯ୍ୟନ୍ତ ଆନ୍ତର୍ଜାତିକ ବ୍ୟବସାୟ ମେଳା ନୋଇଡ଼ା ଦିଲ୍ଲୀରେ ଯୋଗଦାନ କରି ପୁଞ୍ଜି ବିନିଯୋଗକାରୀମାନଙ୍କୁ ଆକୃଷ୍ଟ କରିଥିଲେ ।

(୬) ପୁଞ୍ଜି ବିନିଯୋଗକାରୀଙ୍କୁ ଅଟୋଆନ୍‌ସିଲାରୀ କ୍ଷେତ୍ରରେ ପୁଞ୍ଜି ବିନିଯୋଗ କରିବା ପାଇଁ ଅଷ୍ଟମ ସ୍ଥାନରେ ଥିଲେ ଜାନୁଆରୀ ୧୨ରେ ପ୍ରଗତି ମଇଦାନରେ । ଏକ୍ସପୋ ୨୦୦୮ ଯୋଗଦାନ କରିଥିଲେ ।

**୭. ବିବିଧ କାର୍ଯ୍ୟ**

(୧) ମୁଖ୍ୟମନ୍ତ୍ରୀଙ୍କ ସମ୍ମିଳନୀ କକ୍ଷରେ ତା.୫.୫.୨୦୦୭ରେ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଅଧକ୍ଷତାରେ ସହାୟକ ଶିଳ୍ପ ଓ ଡାଉନ୍ ଶିଳ୍ପ ବିକାଶ ପାଇଁ ଏକ ବୈଠକ ଅନୁଷ୍ଠିତ ହୋଇଥିଲା ।

(୨) ଫ୍ଲାୟଆସ ବ୍ୟବହାର କରି ଶିଳ୍ପ ପ୍ରତିଷ୍ଠା କରିବା ପାଇଁ ଫ୍ଲାୟଆସ/ବ୍ଲାଷ୍ଟ ଫର୍ନେସ ସ୍ଲାଗ ମିଶନ ତା.୧୪.୫.୨୦୦୭ରୁ କାର୍ଯ୍ୟକାରୀ ହେଉଛି ।

(୩) ପ୍ରତ୍ୟେକ ଜିଲ୍ଲା ଶିଳ୍ପକେନ୍ଦ୍ରମାନଙ୍କୁ ଆନୁଷଙ୍ଗିକ ଶିଳ୍ପ ଓ ଡାଉନ୍ ଷ୍କିମ୍ ବିକାଶ ପାଇଁ ଯୋଜନା ପ୍ରସ୍ତୁତି କରି ଦିଆଯାଇଛି ।

(୪) ଷ୍ଟିଲ୍ ଆଲୁମିନିୟମ ଆନୁଷଙ୍ଗିକ ଓ ଡାଉନ୍ ଷ୍କିମ୍ ଶିଳ୍ପ ବିଭାଗ ପାଇଁ ପୁଞ୍ଜି ବିନିଯୋଗକାରୀମାନଙ୍କୁ ଆକୃଷ୍ଟ କରିବା ନିମନ୍ତେ ପଥପ୍ରଦର୍ଶନୀ/ଅଭିଯାନ ନିମନ୍ତେ ୨୦୦୮-୦୯ ବର୍ଷର ବ୍ୟୟ ଅଟକଳ ପ୍ରସ୍ତୁତ କରାଯାଉଛି ।

(୫) ଇସ୍ପାତ ଆଲୁମିନିୟମ, ପେଟ୍ରୋକେମିକାଲ୍ ସଂକ୍ରାନ୍ତୀୟ ଆନୁଷଙ୍ଗିକ ଶିଳ୍ପ ପ୍ରତିଷ୍ଠା ପାଇଁ ଚିହ୍ନଟ କରାଯାଉଛି ।

(୬) କଳିଙ୍ଗନଗରଠାରେ ଷ୍ଟେନଲେସ୍ ଷ୍ଟିଲ୍ ପାର୍କ କରିବା ପାଇଁ ଏମ୍.ଏସ୍. ଜିନ୍ଦାଲ ପ୍ରାରମ୍ଭିକ ଯୋଜନା ପ୍ରସ୍ତୁତି କରିଆସୁଛନ୍ତି ।

(୭) ଓଡ଼ିଶା ରାଜ୍ୟରେ ଏ.ଏଫ୍. ଫରଗୁସନ୍ ଆଣ୍ଡ୍ କୋ କଲକତା ସହାୟତାରେ ଆଲୁମିନା ଏବଂ ଆଲୁମିନିୟମ୍ ଆନୁଷଙ୍ଗିକ ଶିଳ୍ପ ପ୍ରତିଷ୍ଠା କରିବା ପାଇଁ ନାଲ୍କୋ ସକାରାତ୍ମକ ବିବରଣୀ ପ୍ରସ୍ତୁତ କରିଛନ୍ତି ।

(୮) ପୋସ୍କୋ ଇଣ୍ଡିଆ ପ୍ରାଇଭେଟ ଲିମିଟେଡ୍ ସନ୍ନିକଟ ଶିଳ୍ପାଞ୍ଚଳରେ ଆନୁଷଙ୍ଗିକ ଶିଳ୍ପ ବିକାଶ ପାଇଁ ଟାକ୍ସ ଫୋର୍ସ କମିଟି ଗଠନ କରାଯାଇଛି । ଏହାର ତୃତୀୟ ବୈଠକ ୧୬.୦୪.୨୦୦୭ ପୂର୍ବାହ୍ନ ୧୧ଟା ସମୟରେ ଇଡ୍‌କୋ, ଭୁବନେଶ୍ୱର ବୋର୍ଡ଼ର ପ୍ରକୋଷ୍ଠରେ ଅନୁଷ୍ଠିତ ହୋଇଯାଇଛି ।

(୯) ପାରାଦୀପଠାରେ ପେଟ୍ରୋକେମିକାଲ ଶିଳ୍ପ ବିକାଶ ପାଇଁ ପଦକ୍ଷେପ ନିଆଯାଇଛି ।

(୧୦) ଏନ୍.ଆଇ.ଏନ୍.ଏଲ୍.ର ପ୍ଲାକ୍ ମିଟିଙ୍ଗ ୨୧.୭.୨୦୦୭ରେ ଅନୁଷ୍ଠିତ ହୋଇଯାଇଅଛି ।

(୧୧) କଳିଙ୍ଗ ନଗର ସନ୍ନିକଟ ଅଞ୍ଚଳରେ ପାରାଦୀପ, ଝାରସୁଗୁଡ଼ା ଏବଂ ରାୟଗଡ଼ା ଅଞ୍ଚଳରେ ଆନୁଷଙ୍ଗିକ ଅଧଃସ୍ରୋତ ଶିଳ୍ପ ବିକାଶ ପାଇଁ ଆଞ୍ଚଳିକ ଉପଦେଷ୍ଟା କମିଟି ଗଠନ କରାଯାଇଛି ।

(୧୨) ବୃହତ/ମେଗା ଶିଳ୍ପ, ଶିଳ୍ପାଞ୍ଚଳରେ ଆନୁଷଙ୍ଗିକ ଅଧଃସ୍ରୋତ ଶିଳ୍ପର ବିକାଶ ପାଇଁ ପ୍ଲାଣ୍ଟ ପରାମର୍ଶ ଦାତା କମିଟି ଗଠନ କରାଯାଇଅଛି ।

(୧୩) ୨୦୦୮ ମସିହା ଶିଳ୍ପୋଦ୍ୟୋଗୀ ସପ୍ତାହପାଳନ ଅବସରରେ ଆନୁଷଙ୍ଗିକ ଅଧଃସ୍ରୋତ ଶିଳ୍ପ ବିକାଶ ପାଇଁ ୭.୩.୨୦୦୮ରେ ହୋଟେଲ ସ୍ୱସ୍ତିପ୍ଲାଜାରେ ଏକ କର୍ମଶାଳା ଅନୁଷ୍ଠିତ ହୋଇଯାଇଛି ।

### ୭.୧ ରଗ୍‌ଣ ଶିଳ୍ପର ପୁନରୁଦ୍ଧାର ପାଇଁ ପଦକ୍ଷେପ

୨୦୦୭-୦୮ ମସିହା ରଗ୍‌ଣ ଶିଳ୍ପଗୁଡ଼ିକୁ ପୁନରୁଦ୍ଧାର କରିବା ପାଇଁ ଯୋଜନା ପ୍ରସ୍ତୁତ କରାଯାଇ ସମସ୍ତ ଶିଳ୍ପକେନ୍ଦ୍ରକୁ ଜଣାଇ ଦିଆଯାଇଅଛି ।

ରଗ୍‌ଣ ଶିଳ୍ପଗୁଡ଼ିକୁ ଚିହ୍ନଟ କରିବା ପାଇଁ ପ୍ରୋଫୋର୍ମା ତିଆରି କରି ସମସ୍ତ ଜିଲ୍ଲା ଶିଳ୍ପକେନ୍ଦ୍ରକୁ ଯୋଗାଇ ଦିଆଯାଇଅଛି ।

୨୦୦୭-୦୮ର ରଗ୍‌ଣ ଶିଳ୍ପର ପୁନରୁଦ୍ଧାର ପାଇଁ ଜିଲ୍ଲାସ୍ତରୀୟ ଧାର୍ଯ୍ୟଲକ୍ଷ୍ୟ ସମସ୍ତ ଜିଲ୍ଲା ଶିଳ୍ପକେନ୍ଦ୍ରକୁ ଜଣାଇ ଦିଆଯାଇଛି ।

### ୭.୨ କ୍ରେଡ଼ିଟ୍ ଫ୍ଲୋ ଟୁ ଏମ୍.ଏସ୍.ଏମ୍.ଇ. ସେକ୍ଟର

ଏମ୍.ଏସ୍.ଏମ୍.ଇ. ଋଣ ଆଦାୟକୁ ତ୍ୱରାନ୍ୱିତ କରିବା ପାଇଁ ଫରମାଟ୍ କରାଯାଇ ସମସ୍ତ ଜିଲ୍ଲା ଶିଳ୍ପକେନ୍ଦ୍ରକୁ ଦିଆଯାଇଅଛି ଏବଂ ଏହା ସହିତ ପ୍ରଚୁର ପରିମାଣର ଋଣ ପ୍ରସ୍ତାବ ପ୍ରତ୍ୟେକ ବ୍ୟାଙ୍କଗୁଡ଼ିକୁ ପଠାଇ ଶୀଘ୍ର ଫଏସଲା କରିବାପାଇଁ ତ୍ୱରାନ୍ୱିତ କରିବାକୁ ଅନୁରୋଧ କରାଯାଇଅଛି ।

### ୮. ପଞ୍ଚାୟତ ସମିତି ଶିଳ୍ପ

ରାଜ୍ୟରେ ପଞ୍ଚାୟତ ସମିତି ଶିଳ୍ପ କାର୍ଯ୍ୟକ୍ରମ ୧୯୬୧-୬୨ ମସିହାରେ କାର୍ଯ୍ୟକାରୀ ହେଲା । ଏହି କାର୍ଯ୍ୟକ୍ରମ ଅନୁଯାୟୀ ପ୍ରତିଷ୍ଠିତ ଶିଳ୍ପ ସଂସ୍ଥାଗୁଡ଼ିକ କ୍ଷୁଦ୍ର ଶିଳ୍ପ ଅଟନ୍ତି ଏବଂ ସାଧାରଣତଃ ଶିଳ୍ପ ସମବାୟ ସମିତି ଭାବେ ସ୍ଥାପିତ । ରାଜ୍ୟର ବିଭିନ୍ନ ଗ୍ରାମପଞ୍ଚାୟତ ପରିସରରେ ଅବସ୍ଥିତି ହେତୁ ଏବଂ ଗ୍ରାମପଞ୍ଚାୟତମାନେ ଉକ୍ତ ଶିଳ୍ପ ସଂସ୍ଥାଗୁଡ଼ିକରେ ଅଂଶଧନ ବିନିଯୋଗ କରିଥିବା କାରଣରୁ ଉକ୍ତ କ୍ଷୁଦ୍ର ଶିଳ୍ପ ସଂସ୍ଥାସମୂହ ପଞ୍ଚାୟତ ସମିତି ଶିଳ୍ପ ଭାବରେ ନାମିତ । ଏହି ଶିଳ୍ପ ସଂସ୍ଥାଗୁଡ଼ିକ ରାଜ୍ୟ ସରକାରଙ୍କଦ୍ୱାରା ରାଜ୍ୟ ସରକାରଙ୍କ ମିଳିତ ଅଂଶଧନ ବିନିଯୋଗରେ ମଧ୍ୟ କାର୍ଯ୍ୟରତ । ଏହି କାର୍ଯ୍ୟକ୍ରମର ଲକ୍ଷ୍ୟ ଓ ଅଭିମୁଖ୍ୟ:

(କ) ଗ୍ରାମାଞ୍ଚଳରେ ଶିଳ୍ପଭିତ୍ତିକ ପରିବେଶ ତ୍ୱରାନ୍ୱିତ କରିବା ।

(ଖ) ଗ୍ରାମାଞ୍ଚଳରେ ବାସ କରୁଥିବା ଲୋକମାନଙ୍କର କର୍ମସଂସ୍ଥାନର ଉନ୍ନତି ।

(ଗ) ସ୍ଥାନୀୟ ସମ୍ବଳ, କାରିଗରୀ ଜ୍ଞାନକୌଶଳ ତଥା କଞ୍ଚାମାଲର ସଫଳ ବିନିଯୋଗ ପୂର୍ବକ ଗ୍ରାମଭିତ୍ତିକ ଶିଳ୍ପଜାତ ପଦାର୍ଥ ଉତ୍ପାଦନ ।

(ଘ) ଗ୍ରାମର କୃଷିଜୀବୀ ଓ କାରିଗରମାନଙ୍କର ଦକ୍ଷତା ଅନୁଯାୟୀ ସଫଳ ଲାଭାଂଶ ପ୍ରାପ୍ତି ।

ଉକ୍ତ କାର୍ଯ୍ୟକ୍ରମ ଆନୁକୂଲ୍ୟରେ କାଠ କାରଖାନା, ଲୌହ ଶିଳ୍ପ, କମାର ଶିଳ୍ପ, ଟାଇଲ କାରଖାନା, ଛତା କାରଖାନା, ଚିନିକଳ ଇତ୍ୟାଦି ବହୁବିଧ ଯାନ୍ତ୍ରିକ ଓ ଅଣଯାନ୍ତ୍ରିକ ୧୪୭ଟି ପଞ୍ଚାୟତ ସମିତି ଶିଳ୍ପ ସଂସ୍ଥା ସ୍ଥାପିତ ହୋଇଥିଲା । କିନ୍ତୁ ୧୯୯୩-୯୪ ମସିହାରୁ ଯଥେଷ୍ଟ ଅର୍ଥର ଅଭାବ । ଅନୁନ୍ନତ କାରିଗରୀ କୌଶଳ ଓ ପରିଚାଳନାଗତ ସମସ୍ୟା ଆଦି ବିଭିନ୍ନ କାରଣରୁ ଅଧିକାଂଶ ଶିଳ୍ପ ସଂସ୍ଥା ଅଚଳ ଓ ସମାପନ ପ୍ରକ୍ରିୟାଧୀନ ଅବସ୍ଥାରେ ପଡ଼ି ରହିଛି ।

ଉକ୍ତ ୧୪୭ଟି ପଞ୍ଚାୟତ ଶିଳ୍ପ ସଂସ୍ଥାର ବର୍ତ୍ତମାନ ସ୍ଥିତି ନିମ୍ନରେ ପ୍ରଦାନ କରାଗଲା ।

| | | |
|---|---|---|
| ୧. | କାର୍ଯ୍ୟକ୍ଷମ ଶିଳ୍ପ | ୧୮ |
| ୨. | ଅଚଳ ଶିଳ୍ପ | ୫ |
| ୩. | ସମାପନ ଅବସ୍ଥାରେ ଥିବା ଶିଳ୍ପ | ୧୨୦ |
| ୪. | ପୂର୍ଣ୍ଣ ସମାପିତ ଶିଳ୍ପ | ୪ |
| | **ମୋଟ** | **୧୪୭** |

**୮.୧ ସଫଳତା**

କାର୍ଯ୍ୟକ୍ଷମ ୧୮ ଗୋଟି ପଞ୍ଚାୟତ ସମିତି ଶିଳ୍ପ ସଂସ୍ଥା ୨୦୦୬-୦୭ ଆର୍ଥିକ ବର୍ଷରେ ୪୧୮.୫୮ ଲକ୍ଷ ଟଙ୍କାର ଦ୍ରବ୍ୟ ଉତ୍ପାଦନ କରିଛନ୍ତି ଏବଂ ଉତ୍ପାଦିତ ଦ୍ରବ୍ୟଗୁଡ଼ିକୁ ୪୫୦.୪୨ ଲକ୍ଷ ଟଙ୍କାରେ ବିକ୍ରୟ କରିଛନ୍ତି ।

ଖ. ବୈଷୟିକ ଶିକ୍ଷା ଓ ତାଲିମ ନିର୍ଦ୍ଦେଶାଳୟ (ଡି.ଟି.ଇ. ଏବଂ ଟି.), ଓଡ଼ିଶା, କଟକ

ଦଶମ ବାର୍ଷିକ ଯୋଜନାରେ କେ.ବି.କେ. ଅଞ୍ଚଳରେ ଥିବା ମାଲକାନଗିରି ଜିଲ୍ଲାରେ ଗୋଟିଏ ନୂତନ ସରକାରୀ ପଲିଟେକ୍ନିକ୍ ସ୍ଥାପନ କରିବା ପାଇଁ ଓଡ଼ିଶା ସରକାରଙ୍କ ଶିଳ୍ପ ବିଭାଗର ପତ୍ର ସଂଖ୍ୟା ନଂ-୧୯୨୧୯/ଆଇ. ତା.୨୨.୧୨.୨୦୦୬ରେ ଏକ ପ୍ରସ୍ତାବ ଭାରତ ସରକାରଙ୍କ ନିକଟକୁ ପଠାଯାଇଥିଲା, ଯାହାକି ସରକାରଙ୍କ ବିଚରାଧୀନ ଅଛି ।

ଏହାବ୍ୟତୀତ ଏକାଦଶ ପଞ୍ଚବାର୍ଷିକ ଯୋଜନାରେ (NCMP) ବୌଦ୍ଧ, କଳାହାଣ୍ଡି, ଗଜପତି, ନବରଙ୍ଗପୁର, କୋରାପୁଟ, ସମ୍ବଲପୁର, କନ୍ଧମାଳ ଏବଂ ମୟୂରଭଞ୍ଜ ଜିଲ୍ଲାରେ ଆଉ ୮ ଗୋଟି ନୂଆ ସରକାରୀ ପଲିଟେକ୍ନିକ୍ ପ୍ରତିଷ୍ଠା ପାଇଁ ଓଡ଼ିଶା ସରକାରଙ୍କ ପତ୍ର ସଂଖ୍ୟା ନଂ- ୧୪୯୭୨/ଆଇ. ତା.୪.୧୨.୨୦୦୭ରେ ଏକ ପ୍ରସ୍ତାବ ସଚିବ, MHRD, ଉଚ୍ଚଶିକ୍ଷା ବିଭାଗ, ଭାରତ ସରକାର, ନୂଆ ଦିଲ୍ଲୀଙ୍କ ନିକଟକୁ ପଠାଯାଇଛି, ଯାହାକି ସରକାରଙ୍କ ବିଚାରାଧୀନ ଅଛି ।

ବିଭିନ୍ନ ଡିପ୍ଲୋମା ପାଠ୍ୟକ୍ରମରେ ନାମଲେଖା ପାଇଁ ସରକାରଙ୍କ ନିର୍ଦ୍ଦେଶାନୁସାରେ ୨୩% ଆସନ ଆଦିବାସୀଙ୍କ ପାଇଁ ଓ ୧୫% ଆସନ ହରିଜନ ଛାତ୍ରମାନଙ୍କ ପାଇଁ ଆରକ୍ଷଣ ରଖାଯାଇଅଛି ।

ହରିଜନ ଓ ଆଦିବାସୀଙ୍କ ଆତ୍ମନିଯୁକ୍ତି ପାଇଁ ଟ.୨୦୦.୦୦ ଲକ୍ଷ ଓ ଟ.୧୯୧.୬୦ ଲକ୍ଷ ଟଙ୍କା Tools & Equipments କିଣା ପାଇଁ ପ୍ରସ୍ତାବ ମଧ୍ୟ ରହିଅଛି । ସେହିଭଳି ବିଭିନ୍ନ ଛାତ୍ରୀମାନଙ୍କ ପାଇଁ ଯାନ୍ତ୍ରିକ ବିଦ୍ୟାଳୟ ଓ ପଲିଟେକ୍ନିକ୍‌ମାନଙ୍କରେ ଥିବା ଡିପ୍ଲୋମା ପାଠ୍ୟକ୍ରମରେ ନାମଲେଖା ପାଇଁ ୧୫ ଶତକଡ଼ା ଆସନ ଆରକ୍ଷଣ କରାଯାଇଅଛି । ସରକାରୀ ଓ ବେସରକାରୀ ସ୍ତରରେ ଚାଲୁଥିବା ସ୍ନାତକ ଓ ଡିପ୍ଲୋମା ଅନୁଷ୍ଠାନର ବାସ୍ତବ ସଫଳତା ।

| ବିଦ୍ୟା | ଅଧିବେଶନ | ସରକାରୀ ଅନୁଷ୍ଠାନର ସଂଖ୍ୟା | ମଞ୍ଜୁରୀପ୍ରାପ୍ତ ସଂଖ୍ୟା | ବେସରକାରୀ ଅନୁଷ୍ଠାନର ସଂଖ୍ୟା | ମଞ୍ଜୁରୀପ୍ରାପ୍ତ ସଂଖ୍ୟା | ସମୁଦାୟ ମଞ୍ଜୁରିପ୍ରାପ୍ତ ସଂଖ୍ୟା |
|---|---|---|---|---|---|---|
| ସ୍ନାତକ | ୨୦୦୭-୦୮ | ୦୪ | ୯୨୦ | ୪୧ | ୧୪୯୧୮ | ୧୫୮୩୮ |
| ଡିପ୍ଲୋମା | ୨୦୦୭-୦୮ | ୧୩ | ୨୬୪୫ | ୨୫ | ୮୦୦୫ | ୧୦୬୫୯ |

୨୦୦୮-୦୯ ବିଦ୍ୟା ବିଷୟକ ଅଧିବେଶନ ପାଇଁ ୬୦ ଜଣ ଆବେଦନକାରୀ ରାଜ୍ୟରେ ନୂତନ ବେସରକାରୀ ଡିପ୍ଲୋମା ଅନୁଷ୍ଠାନ ପ୍ରତିଷ୍ଠା କରିବା ପାଇଁ ଆବେଦନ କରିଛନ୍ତି ।

**କାରିଗରୀ ପ୍ରଶିକ୍ଷଣ**

| ସରକାରୀ ଶିକ୍ଷାନୁଷ୍ଠାନର ସଂଖ୍ୟା | ଗୃହୀତ ସାମର୍ଥ୍ୟ | ବେସରକାରୀ ଶିକ୍ଷାନୁଷ୍ଠାନର ସଂଖ୍ୟା | ଗୃହୀତ ସାମର୍ଥ୍ୟ | ସମୁଦାୟ ସାମର୍ଥ୍ୟ |
|---|---|---|---|---|
| ୨୫ | ୬୮୪୪ | ୨୦୭ | ୨୯୪୩୨ | ୩୬୨୭୬ |

୧୮୦ଟି ବ୍ଲକ୍‌କୁ ଅନ୍ତର୍ଭୁକ୍ତ କରି ୨୦୦୭-୦୮ ବର୍ଷରେ ବେସରକାରୀ ଉଦ୍ୟୋଗରେ ୧୩୬ଟି ନୂତନ ITC ପ୍ରତିଷ୍ଠା ନିମିତ୍ତ ସହବନ୍ଧନ ପାଇଁ NCVT, New Delhiକୁ ସୁପାରିଶ କରାଯାଇଛି ।

ଗଞ୍ଜାମ ଜିଲ୍ଲାର ହିଞ୍ଜିଳିକାଟ ଓ ପୁରୁଷୋତ୍ତମପୁର ଏବଂ ସୁବର୍ଣ୍ଣପୁର ଜିଲ୍ଲାର ସୋନପୁରଠାରେ ଆସନ୍ତା ୨୦୦୮-୦୯ ବର୍ଷରେ ୩ ଗୋଟି ସରକାରୀ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ହେବାକୁ ଯାଉଛି ।

୨୦୦୫-୦୬ ବର୍ଷଠାରୁ ITI, Cuttack ଏବଂ Rourkelaକୁ ଭାରତ ସରକାରଙ୍କର ଶ୍ରମ ଓ ନିଯୁକ୍ତି ମନ୍ତ୍ରାଳୟର COE ଅଧୀନରେ ଉଚ୍ଚ ମାନ୍ୟତା ଦିଆଯାଇଅଛି ।

୨୦୦୬ରୁ ୨୦୧୦ ମଧ୍ୟରେ ଆଉ ୧୦ ଗୋଟି ଶିଳ୍ପ ତାଲିମ ଅନୁଷ୍ଠାନଙ୍କୁ ବିଶ୍ୱବ୍ୟାଙ୍କ ସହାୟତାରେ ଉଚ୍ଚମାନ୍ୟତା ଦିଆଯିବ ।

୨୦୦୭-୧୦ ମଧ୍ୟରେ ଆଉ ୧୩ଟି ଶିଳ୍ପ ତାଲିମ ଅନୁଷ୍ଠାନକୁ P.P.P. ଶୈଳୀରେ COEର ଅନ୍ତର୍ଭୁକ୍ତ କରାଯିବ ।

ଚଳିତ ଆର୍ଥିକ ବର୍ଷ ୨୦୦୭-୦୮ରେ କାରିଗରୀ ପ୍ରଶିକ୍ଷଣ ଓ ବୈଷୟିକ ଶିକ୍ଷା ଦେବାପାଇଁ ଯଥାକ୍ରମେ ଟ.୩୦୭୭.୦୪ ଲକ୍ଷ ଓ ଟ.୪୪୯୨.୯୪ ଲକ୍ଷ ବ୍ୟବସ୍ଥା କରାଯାଇଅଛି ।

**ଶିକ୍ଷାନବିଶ ପ୍ରଶିକ୍ଷଣ**

ରାଜ୍ୟରେ ୧୪ଟି Apprenticeship Zoneରେ ଏବଂ ୪୯୫ State Sector Estts. ମାଧ୍ୟମରେ ୩୯୯୪ ଜଣ Trade Apprenticeship (ITI Trainees) ନେବାର ସୁବିଧା ଅଛି ।

ସେହିପରି ୨୧୮ଟି ସଂସ୍ଥାରେ ସମ୍ପୂର୍ଣ୍ଣ Merit ଭିତ୍ତିରେ ୨୩୭୯ ଜଣ ବୈଷୟିକ ଶିକ୍ଷାନବିଶଙ୍କ (Diploma Holders) ପାଇଁ ପ୍ରଶିକ୍ଷଣ ନେବାର ସୁବିଧା ଅଛି ।

**ନିଯୁକ୍ତି ମିଶନ**

ପ୍ରଥମ ପର୍ଯ୍ୟାୟରେ ନିଯୁକ୍ତି ମିଶନର ଅଧୀନରେ ୭୦୯୨ ଜଣ ବେକାରୀ ଯୁବକଙ୍କୁ ୨୮ଟି ITI/ITCରେ ପ୍ରଶିକ୍ଷଣ ଦିଆଯାଉଅଛି । ଦ୍ୱିତୀୟ ପର୍ଯ୍ୟାୟରେ ୨୩୩ ITI/ITC ୯୦୮୦ ଜଣ ବେକାରୀ ଯୁବକ/ଯୁବତୀମାନଙ୍କୁ ପ୍ରଶିକ୍ଷଣ ଦିଆଯିବାର ବ୍ୟବସ୍ଥା କରାଯାଇଛି ।

## ଗ. ରପ୍ତାନୀ ଉନ୍ନୟନ ଓ ବାଣିଜ୍ୟ ନିର୍ଦ୍ଦେଶାଳୟ, ଓଡ଼ିଶା, ଭୁବନେଶ୍ୱର

ଶିଳ୍ପ ସଂସ୍ଥାମାନଙ୍କୁ ବାଣିଜ୍ୟିକ ସହାୟତା ଦେବା ତଥା ରପ୍ତାନୀର ପ୍ରସାର ନିମନ୍ତେ ରପ୍ତାନୀକାରୀମାନଙ୍କୁ ରପ୍ତାନୀ ସହାୟତା ଦେବା ନିମନ୍ତେ ରପ୍ତାନୀ ଉନ୍ନୟନ ଓ ବାଣିଜ୍ୟ ନିର୍ଦ୍ଦେଶାଳୟରେ ତିନିଗୋଟି ଅଣଯୋଜନା ସ୍କିମ୍ ଯଥା- (୧) ରପ୍ତାନୀ ଉନ୍ନୟନ ଓ ବାଣିଜ୍ୟ ନିର୍ଦ୍ଦେଶାଳୟ, (୨) ପରୀକ୍ଷଣ ପ୍ରୟୋଗଶାଳା, (୩) ବୈଦ୍ୟୁତିକ ଗୃହ ଉପକରଣମାନ ନିର୍ଦ୍ଧାରଣ କାର୍ଯ୍ୟକାରୀ କରାଯାଉଅଛି ଏବଂ ରାଜ୍ୟ ଯୋଜନାରେ ପରୀକ୍ଷଣ ପ୍ରୟୋଗଶାଳାଗୁଡ଼ିକରେ ଆଧୁନିକୀକରଣ ସ୍କିମ୍ କାର୍ଯ୍ୟକାରୀ କରାଯାଉଅଛି । ରପ୍ତାନୀ ଉନ୍ନୟନ ଓ ବାଣିଜ୍ୟ ନିର୍ଦ୍ଦେଶାଳୟ ରାଜ୍ୟରେ ଥିବା ଶିଳ୍ପ ସଂସ୍ଥାଗୁଡ଼ିକୁ ବାଣିଜ୍ୟିକ ପ୍ରୋତ୍ସାହନ ଦେବା ନିମନ୍ତେ ସେଗୁଡ଼ିକୁ ରେଜିଷ୍ଟ୍ରିଭୁକ୍ତ କରିବା ତଥା ସ୍ଥଳ ବିଶେଷରେ ସେମାନଙ୍କ ସହିତ ମୂଲ୍ୟଚୁକ୍ତି କରିଥାଏ । ଏହି ଶିଳ୍ପ ସଂସ୍ଥାଗୁଡ଼ିକ ଉତ୍ପାଦନ କରୁଥିବା ଦ୍ରବ୍ୟଗୁଡ଼ିକର ମାନ ନିୟନ୍ତ୍ରଣ କରିବା ନିମନ୍ତେ ନିୟମିତ ଭାବରେ ପରିଦର୍ଶନ କରାଯାଇ ସେମାନଙ୍କର ଉତ୍ପାଦିତ ଦ୍ରବ୍ୟଗୁଡ଼ିକର ନମୁନା ସଂଗ୍ରହ କରାଯାଏ ଓ ସେଗୁଡ଼ିକୁ ଉକ୍ତ ନିର୍ଦ୍ଦେଶାଳୟ ଅଧୀନରେ ଥିବା ସ୍ଥାନୀୟ ପରୀକ୍ଷଣ ପ୍ରୟୋଗଶାଳା ଯଥା- କଟକ, ରାଉରକେଲା, ଅନୁଗୁଳ, ବ୍ରହ୍ମପୁର, ବାଲେଶ୍ୱର ଓ ବଲାଙ୍ଗିରଠାରେ ପରୀକ୍ଷଣ କରାଯାଏ ।

ଉକ୍ତ ନିର୍ଦ୍ଦେଶାଳୟରେ ୩୧ ମାର୍ଚ୍ଚ ୨୦୦୮ ମସିହା ସୁଦ୍ଧା ୨୧ ଗୋଟି କ୍ଷୁଦ୍ର ଶିଳ୍ପ ସଂସ୍ଥା ରେଜିଷ୍ଟ୍ରିଭୁକ୍ତ ହୋଇଛନ୍ତି ଏବଂ ରେଜିଷ୍ଟ୍ରେସନ ଫି ଟ.୧୦୬୫୦.୦୦ କ୍ଷୁଦ୍ରଶିଳ୍ପ ସଂସ୍ଥାମାନଙ୍କଠାରୁ ଆଦାୟ କରାଯାଇଅଛି, ଯେଉଁମାନେ ରାଜ୍ୟ ସରକାରଙ୍କଠାରୁ କ୍ରୟ ସୁବିଧା ଏବଂ ଆର୍ଥିକ ସୁବିଧା ପାଉଛନ୍ତି । ଏତଦ୍‌ବ୍ୟତୀତ ୮୫ ଗୋଟି କ୍ଷୁଦ୍ର ଶିଳ୍ପ ସଂସ୍ଥାର ପଞ୍ଜିକରଣ ପ୍ରମାଣପତ୍ର ନବୀକରଣ କରାଯାଇଅଛି । ୬୯ ଗୋଟି ଅତିରିକ୍ତ ସାମଗ୍ରୀ ପଞ୍ଜିକରଣ ପ୍ରମାଣପତ୍ର କରାଯାଇଅଛି, ଯାହାଦ୍ୱାରା ୩୩ ଗୋଟି କ୍ଷୁଦ୍ର ଶିଳ୍ପ ସଂସ୍ଥା ଉପକୃତ ହୋଇଛନ୍ତି । ଚଳିତ ଆର୍ଥିକ ବର୍ଷରେ ୪୯ ଗୋଟି ଦ୍ରବ୍ୟର ଦର ଚୁକ୍ତି ନିମନ୍ତେ ୨୪୦୧ ଗୋଟି ଶିଳ୍ପ ସଂସ୍ଥାମାନଙ୍କୁ ଅଫର୍ ନୋଟିସ୍ ପଠାଯାଇଅଛି ଏବଂ ଅଫର୍ ଫି ବାବଦକୁ ଟ.୨,୬୫,୫୦୦ ଆଦାୟ କରାଯାଇଅଛି । ସେହିପରି ୯୨ ଗୋଟି ଦ୍ରବ୍ୟର ଦର ଚୁକ୍ତି ଏବଂ ଦର ଚୁକ୍ତି ମିଆଦ ବୃଦ୍ଧି ସମ୍ପାଦିତ କରାଯାଇ ୭୬୦ ଗୋଟି କ୍ଷୁଦ୍ର ଶିଳ୍ପ ସଂସ୍ଥା ଉପକୃତ ହୋଇଛନ୍ତି । ୭୬ ଗୋଟି ଦ୍ରବ୍ୟର ସମାନ୍ତରାଳୟ ଦର ଚୁକ୍ତି କରାଯାଇଛି ଏବଂ ୧୧୮ ଗୋଟି ଶିଳ୍ପ ସଂସ୍ଥା ଉପକୃତ ହୋଇଛନ୍ତି ଏବଂ ସମାନ୍ତରାଳ ଦର ଚୁକ୍ତି ଫି ବାବଦକୁ ଟ.୧,୨୪,୦୦୦ ଆଦାୟ କରାଯାଇଅଛି । ୧୪ ଗୋଟି ଦ୍ରବ୍ୟର ଦର ଚୁକ୍ତି ସଂଶୋଧନ କରାଯାଇଛି, ଯାହାଦ୍ୱାରା ୨୩୮ ଗୋଟି ଶିଳ୍ପସଂସ୍ଥା ଉପକୃତ ହୋଇଛନ୍ତି ।

ସରକାରୀ କାର୍ଯ୍ୟାଳୟଗୁଡ଼ିକୁ ଉନ୍ନତମାନର ଦ୍ରବ୍ୟ ଯୋଗାଣ ନିମନ୍ତେ ଉକ୍ତ ନିର୍ଦ୍ଦେଶାଳୟଦ୍ୱାରା ପାକ୍ ଯୋଗାଣ ତନଖି (ପି.ଡି.ଆଇ.) କରାଯାଇଥାଏ । ଚଳିତ ଆର୍ଥିକ ବର୍ଷରେ ୩୧ ମାର୍ଚ୍ଚ ୨୦୦୮ ସୁଦ୍ଧା ୧୮୬୩ ଗୋଟି ପ୍ରାକ୍ ଯୋଗାଣ ତନଖି କରାଯାଇ ୧୨୦ ଗୋଟି କ୍ଷୁଦ୍ର ଶିଳ୍ପ ସଂସ୍ଥାର ପି.ଡି.ଆଇ. ଫି ବାବଦକୁ ଟ.୪୯,୯୧,୫୮୨ କ୍ଷୁଦ୍ର ଶିଳ୍ପ ସଂସ୍ଥାମାନଙ୍କଠାରୁ ଆଦାୟ କରାଯାଇଅଛି ।

ଉକ୍ତ ନିର୍ଦ୍ଦେଶାଳୟ ଅଧୀନରେ ଥିବା ପରୀକ୍ଷଣ ପ୍ରୟୋଗଶାଳାଗୁଡ଼ିକରେ ୧୦୨୬୩ ଗୋଟି ଦ୍ରବ୍ୟର ନମୁନା ପରୀକ୍ଷଣ କରାଯାଇଅଛି ଏବଂ ପରୀକ୍ଷଣ ଫି ବାବଦକୁ ଟ.୧୪,୨୧,୨୪୮ କ୍ଷୁଦ୍ର ଶିଳ୍ପ ସଂସ୍ଥାମାନଙ୍କଠାରୁ ଆଦାୟ କରାଯାଇଅଛି । ସରକାରୀ କ୍ରୟ ପ୍ରୋଗ୍ରାମରେ କ୍ଷୁଦ୍ର ଶିଳ୍ପ ସଂସ୍ଥାମାନଙ୍କୁ ପ୍ରୋତ୍ସାହନ ଦେବା ନିମନ୍ତେ ଉକ୍ତ ନିର୍ଦ୍ଦେଶାଳୟର ଅଧିକାରୀମାନେ ୩୩୯ ଗୋଟି କ୍ରୟ କମିଟି ଯୋଗଦାନ କରିପାରିଛନ୍ତି । କ୍ଷୁଦ୍ର ଶିଳ୍ପ ସଂସ୍ଥାମାନଙ୍କର ବକେୟା ପାଉଣା ପ୍ରାପ୍ତି ସମ୍ବନ୍ଧୀୟ ଏବଂ ବାଣିଜ୍ୟିକ ସହାୟତା ତଥା ୨୫୬ ଗୋଟି ସହାୟତା କ୍ଷୁଦ୍ରଶିଳ୍ପ ସଂସ୍ଥାମାନଙ୍କୁ ଯୋଗାଇ ଦିଆଯାଇଛି ।

ରପ୍ତାନୀ ପ୍ରସାର ନିମନ୍ତେ ରାଜ୍ୟରେ ଥିବା ବିଭିନ୍ନ ରପ୍ତାନୀକାରୀମାନଙ୍କୁ ଦରିଆ ପାରି ଟେଣ୍ଡର ସୁବିଧା ଏବଂ ରପ୍ତାନୀ ବାଣିଜ୍ୟିକ ସହାୟତା ଯୋଗାଇ ଦିଆଯାଉଅଛି ଏବଂ ଆନ୍ତର୍ଜାତିକ ବାଣିଜ୍ୟିକ ଅଂଶ ଗ୍ରହଣ କରିବା ନିମନ୍ତେ ପ୍ରୋତ୍ସାହନ ଦିଆଯାଇଥାଏ । ଚଳିତ ୨୦୦୭-୦୮ ଆର୍ଥିକ ବର୍ଷରେ ରପ୍ତାନୀକାରୀମାନଙ୍କୁ ୩୭୩ ଗୋଟି ଦରିଆପାରି ସହାୟତା ଏବଂ ୧୫୭ ଗୋଟି ରପ୍ତାନୀ ସହାୟତା ଯୋଗାଇ ଦିଆଯାଇଅଛି ।

୨୦୦୫-୦୬ ଆର୍ଥିକ ବର୍ଷରେ ମୋଟ ରପ୍ତାନୀ ପରିମାଣ ୧୦୭୪୩.୯୭ କୋଟି ଟଙ୍କା ହୋଇଥିଲା ଏବଂ ତାହା ବୃଦ୍ଧି ହୋଇ ୨୦୦୬-୦୭ ମସିହାରେ ୧୦୮୬୭.୯୩ କୋଟି ଟଙ୍କା ହୋଇଅଛି ।

୨୦୦୭-୦୮ ମସିହା ୩୧ ମାର୍ଚ୍ଚ ୨୦୦୮ ସୁଦ୍ଧା ସମୁଦାୟ ଟ.୬୮,୧୨,୯୮୦.୦୦ ଅଣକର ରାଜସ୍ୱ ବାବଦକୁ ଆଦାୟ ହୋଇଅଛି ।

**ଘ. ହସ୍ତ ଓ କୁଟୀର ଶିଳ୍ପ ନିର୍ଦ୍ଦେଶାଳୟ (ଡି.ଏଚ୍. ଏବଂ ସି.ଆଇ.), ଓଡ଼ିଶା ଭୁବନେଶ୍ୱର**

ରାଜ୍ୟର ହସ୍ତଶିଳ୍ପ ଓ କୁଟୀର ଶିଳ୍ପର ବିକାଶ ପାଇଁ ଏହି ନିର୍ଦ୍ଦେଶାଳୟ ସୃଷ୍ଟି ହୋଇଅଛି । ନିମ୍ନୋକ୍ତ କେତୋଟି ଯୋଜନା ଏହି ନିର୍ଦ୍ଦେଶାଳୟଦ୍ୱାରା କାର୍ଯ୍ୟକାରୀ କରାଯାଉଅଛି ।

**କ) ଆତ୍ମନିଯୁକ୍ତି ପରିଯୋଜନା**

**ଶିଳ୍ପପୁଞ୍ଜ ବିକାଶ**

ଲକ୍ଷ୍ୟ : ଶିଳ୍ପପୁଞ୍ଜର ୫ କିଲୋମିଟର ପରିଧି ମଧ୍ୟରେ ଗୋଟିଏ ଦୁଇଟି ଶିଳ୍ପ ପ୍ରସ୍ତୁତ କରୁଥିବା ଶିଳ୍ପୀମାନଙ୍କୁ ଏହି ଯୋଜନାରେ ସାମିଲ କରିବା ।

ଆବଶ୍ୟକତା ଅନୁଯାୟୀ ସହାୟତା ପ୍ରଦାନ-

୧. ସାମାଜିକ ଉତ୍‌ଥାନ
୨. ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ ଓ ସଶକ୍ତିକରଣ
୩. କାରିଗରୀ କୌଶଳ ଅଭିବୃଦ୍ଧି
୪. ଗୋଷ୍ଠୀ ବ୍ୟବହାର୍ଯ୍ୟ ହାତହତିଆର ଓ ଯନ୍ତ୍ରପାତି ଯୋଗାଣ
୫. ବଜାର ଆବଶ୍ୟକତା ଅନୁଯାୟୀ ସାମଗ୍ରୀର ବିକାଶ
୬. ବ୍ୟାଙ୍କ ସହବନ୍ଧନ ନିମିତ୍ତ ମୂଳଜମା ପ୍ରଦାନ
୭. ବିକ୍ରିବଟା ସହାୟତା
୮. ଆର୍ଟିଜାନ୍ କ୍ରେଡ଼ିଟ୍ କାର୍ଡ଼
୯. କାରିଗର ବୀମା ଯୋଜନା

**ସ୍ୱତନ୍ତ୍ର କାର୍ଯ୍ୟକ୍ରମ**

୧. ପ୍ରତି ଘରକୁ ଯାଇ କାରିଗରମାନଙ୍କ ଆବଶ୍ୟକତା ସର୍ବେକ୍ଷଣ ମାଧ୍ୟମରେ ଅନୁଧ୍ୟାନ କରିବା ।
୨. ମହିଳାମାନଙ୍କୁ ନେଇ ସ୍ୱତନ୍ତ୍ର ଶିଳ୍ପୀଗୋଷ୍ଠୀ/ଶିଳ୍ପପୁଞ୍ଜ ଗଠନ ।
୩. ଏସ୍.ଜି.ଏସ୍.ୱାଇ. ବିକାଶ ଆୟୁକ୍ତ (ହସ୍ତଶିଳ୍ପ), କୟର ବୋର୍ଡ଼ର ଅନ୍ୟାନ୍ୟ ଯୋଜନା ସହିତ ସାମିଲ ହୋଇ କାର୍ଯ୍ୟ କରିବା ।
୪. ସରକାରୀ ତଥା ବେସରକାରୀ ସଂସ୍ଥା ସହ ବାଣିଜ୍ୟିକ ଅନୁବନ୍ଧନ ।

**ଶିଳ୍ପ ଗ୍ରାମ ଯୋଜନା ୨୦୦୭-୦୮ ମାଧ୍ୟମରେ ଶିଳ୍ପ ପୁଞ୍ଜ ବିକାଶ**

| କ୍ର.ସଂ. | ଜିଲ୍ଲାର ନାମ | ସ୍ଥାନ | ହସ୍ତଶିଳ୍ପର ନାମ | ସଂଖ୍ୟା | | କିସମ |
|---|---|---|---|---|---|---|
| ୧ | ୨ | ୩ | ୪ | ୫ | ୬ | ୭ |
| ୧. | କେନ୍ଦୁଝର | ପଡ଼ଖମା | ଚାନ୍ଦୁଆ | ୪୫ | ୩ | ଆଦିବାସୀ |

| | | | | | | |
|---|---|---|---|---|---|---|
| | | କାଲରାଗଡ଼ିଆ<br>କୁମୁନିଆ | | | | |
| ୨. | ମାଲକାନଗିରି | ପୋଡ଼ାଉଟା<br>ବାହାଲଗୁଡ଼ା | ଟେରାକୋଟା | ୪୫ | ୩ | ଆଦିବାସୀ |
| ୩. | ମୟୂରଭଞ୍ଜ | ଶଙ୍ଖାରୀପଡ଼ା | ବାଉଁଶ | ୪୫ | ୩ | ଆଦିବାସୀ |
| | | ବିଦୁକୁଡ଼ିଆ | ଟେରାକୋଟା | ୪୫ | ୩ | ଆଦିବାସୀ |
| | | | **ମୋଟ** | **୯୦** | **୬** | |
| ୪. | ଗଜପତି | କଇନପୁର | ବେତସାମଗ୍ରୀ | ୪୫ | ୩ | ଆଦିବାସୀ |
| ୫. | ଜଗତସିଂହପୁର | ସାହାଡ଼ା | ବେତ ଓ ବାଉଁଶ ସାମଗ୍ରୀ | ୩୦ | ୨ | ତଫସିଲଭୁକ୍ତ ଜାତି |
| | | ଆୟର | ବେତ ଓ ବାଉଁଶ ସାମଗ୍ରୀ | ୩୦ | ୨ | ତଫସିଲଭୁକ୍ତ ଜାତି |
| | | | **ମୋଟ** | **୬୦** | **୪** | |
| ୬. | ଗଞ୍ଜାମ | ବ୍ରହ୍ମପୁର | ବାଉଁଶ | ୪୫ | ୩ | ତଫସିଲଭୁକ୍ତ ଜାତି |
| ୭. | କଟକ | ବାଉଁଶ | ଚମଡ଼ା ସାମଗ୍ରୀ | ୪୫ | ୩ | ତଫସିଲଭୁକ୍ତ ଜାତି |
| | | ଭଟମୁଣ୍ଡା | କଂସା ପିତଳ ସାମଗ୍ରୀ | ୩୦ | ୨ | ସାଧାରଣବର୍ଗ |
| | | | **ମୋଟ** | **୭୫** | **୫** | |
| ୮. | ଖୋର୍ଦ୍ଧା | ବାଣପୁର | ବେତ ଓ ବାଉଁଶ ସାମଗ୍ରୀ | ୩୦ | ୨ | ତଫସିଲଭୁକ୍ତ ଜାତି |
| | | ପୁରୁଣା ଭୁବନେଶ୍ୱର | ପଥର ଖୋଦେଇ ସାମଗ୍ରୀ | ୩୦ | ୨ | ସାଧାରଣବର୍ଗ |
| | | ପାତ୍ରପଡ଼ା/ନୂଆଗାଁ | ଟେରାକୋଟା | ୩୦ | ୨ | ସାଧାରଣବର୍ଗ |
| | | | **ମୋଟ** | **୯୦** | **୬** | |
| ୯. | କେନ୍ଦ୍ରାପଡ଼ା | ନାନ୍ତାଲା | ପ୍ରାକୃତିକ ତନ୍ତୁ | ୩୦ | ୨ | ତଫସିଲଭୁକ୍ତ ଜାତି |
| ୧୦. | ସୁବର୍ଣ୍ଣପୁର | ସୋନ୍‌ପୁର | ଆଧୁନିକ ଚାନ୍ଦୁଆ | ୩୦ | ୨ | ତଫସିଲଭୁକ୍ତ ଜାତି |
| ୧୧. | ନୟାଗଡ଼ | ପୋଲବାଡ଼ି | ବାଉଁଶ ସାମଗ୍ରୀ | ୩୦ | ୨ | ତଫସିଲଭୁକ୍ତ ଜାତି |
| ୧୨. | ପୁରୀ | ଗୋପ | କାଇଁଚ ସାମଗ୍ରୀ | ୩୦ | ୨ | ସାଧାରଣବର୍ଗ |
| ୧୩. | କଳାହାଣ୍ଡି | ସିରୋଳ | ବାରମାସୀ ତନ୍ତୁ | ୩୦ | ୨ | ସାଧାରଣବର୍ଗ |
| ୧୪. | ଢେଙ୍କାନାଳ | ଗନ୍ଦିଆ | କାଠ ଖୋଦେଇ ଓ ଲାଖ କାମ | ୩୦ | ୨ | ସାଧାରଣବର୍ଗ |
| ୧୫. | ଭଦ୍ରକ | ଭଦ୍ରକ | ଧାନ୍ୟ ହସ୍ତଶିଳ୍ପ | ୩୦ | ୨ | ସାଧାରଣବର୍ଗ |
| | | | **ସର୍ବମୋଟ** | **୭୦୫** | **୪୭** | |

**ଶିଳ୍ପପୁଞ୍ଜରେ ନକ୍ସାଙ୍କନ ବିକାଶ କାର୍ଯ୍ୟକ୍ରମ :**

ଆବଶ୍ୟକୀୟ ନକ୍ସାଙ୍କନ ଜ୍ଞାନ (ଡିଜାଇନ) ଏବଂ ବୈଷୟିକ ଜ୍ଞାନ ସହାୟତା ପ୍ରଦାନ କରାଯାଇ ଶିଳ୍ପ ପୁଞ୍ଜଗୁଡ଼ିକରେ ବଜାର ଚାହିଦା ଥିବା ସାମଗ୍ରୀ ପ୍ରସ୍ତୁତି ।

| କ୍ର.ସଂ | ଶିଳ୍ପକଳାର ନାମ | ସ୍ଥାନ | କାରିଗରଙ୍କ ସଂଖ୍ୟା |
|---|---|---|---|
| ୧. | ୨ | ୩ | ୪ |
| ୧. | ଲାଖ ଚୁଡ଼ି କାମ | ପଦମପୁର | ୧୫ |
| ୨. | ଟେରାକୋଟା | କଲ୍ୟାଣସିଂପୁର | ୨୧ |

**ଅଭିଜ୍ଞତା ତଥା ଜ୍ଞାନ ବୃଦ୍ଧି ପାଇଁ ବହିଃଭ୍ରମଣ:**

ଅନ୍ୟ ଶିଳ୍ପ ପୁଞ୍ଜରେ କାର୍ଯ୍ୟ କରୁଥିବା କାରିଗରମାନଙ୍କର ଜ୍ଞାନ, ଅଭିଜ୍ଞତା ତଥା କଳା କୌଶଳ ଶିକ୍ଷା ନିମିତ୍ତ 'ବହିଃଭ୍ରମଣ' ମାଧ୍ୟମରେ ଅନ୍ୟାନ୍ୟ ଶିଳ୍ପ ପୁଞ୍ଜକୁ ପ୍ରେରଣ କରାଯାଇଛି । ଏତଦ୍‌ଭିନ୍ନ କାରିଗର କୌଶଳ ସମ୍ମିଶ୍ରଣ ସହ କାରିଗରମାନେ ସେମାନଙ୍କ ସାମଗ୍ରୀର ବିକ୍ରୀବଟା ପାଇଁ ଏହି କାର୍ଯ୍ୟକ୍ରମରେ ପ୍ରତ୍ୟକ୍ଷ ଜ୍ଞାନ ପାଇଥାନ୍ତି ।

| କ୍ର. ସଂ. | କେଉଁ ସ୍ଥାନରୁ | କେଉଁ ସ୍ଥାନକୁ | ଶିଳ୍ପ କଳା | ଯୋଗ ଦେଇଥିବା କାରିଗର ସଂଖ୍ୟା | ତାରିଖ |
|---|---|---|---|---|---|
| ୧ | ୨ | ୩ | ୪ | ୫ | ୬ |
| ୧. | ଡାବୁଗାଁ | କମ୍ପାଗାଁ | ଢୋକରା ଶିଳ୍ପ | ୧୦ | ୧୬.୪.୦୭ରୁ ୧୯.୪.୦୭ |
| ୨. | ନବରଙ୍ଗପୁର | ରାଞ୍ଚି | ଲାଖ କାମ | ୬ | ୧୪.୮.୦୭ରୁ ୧୮.୮.୦୭ |
| ୩. | ଚନ୍ଦାହାଣ୍ଡି | ସାହାରନ୍‌ପୁର | କାଷ୍ଠ ଖୋଦେଇ | ୭ | ୮.୮.୦୭ରୁ ୧୬.୮.୦୭ |
| ୪. | କନ୍ଧଗଡ଼ | ପୁରୀ, କୋଣାର୍କ | ଚାନ୍ଦୁଆ | ୫୦ | ୨୩.୮.୦୭ରୁ ୨୬.୮.୦୭ |
| ୫. | ସିଲଟପଡ଼ା | ଲୁଣ୍ଡୁକୁଆ<br>କୁଟୁମଡ଼ୋଲା<br>ପୁଇଁତୋଳା<br>ବାଘମାରି<br>ମହିଁରା | ଟେରାକୋଟା (ଜଗତସିଂହପୁର) | ୩୨ | ୧.୮.୦୭ରୁ ୩.୮.୦୭ |
| ୬. | ପଦମପୁର | ରାଞ୍ଚି | ଲାଖ କାମ | ୭ | ୨୭.୫.୦୭ରୁ ୧.୬.୦୭ |

**ଶିଳ୍ପୋଦ୍ୟୋଗୀ ବିକାଶ କାର୍ଯ୍ୟକ୍ରମ :**

ହସ୍ତଶିଳ୍ପ କ୍ଷେତ୍ରରେ ସଫଳ ଶିଳ୍ପୋଦ୍ୟୋଗୀ ସୃଷ୍ଟି କରିବା ଲକ୍ଷ୍ୟରେ କାରିଗର ବେସରକାରୀ ସଂସ୍ଥା ଓ ଶିଳ୍ପୋଦ୍ୟୋଗୀମାନଙ୍କୁ ଆଇ.ଇ.ଡି. ଓଡ଼ିଶାଦ୍ୱାରା ବୈଷୟିକ ସହାୟତା ପ୍ରଦାନ କରିବା ନିମିତ୍ତ ନିମ୍ନଲିଖିତ ଶିଳ୍ପୋଦ୍ୟୋଗୀ ବିକାଶ କାର୍ଯ୍ୟକ୍ରମ ପରିଚାଳନା କରାଯାଇଛି ।

| କ୍ର. ସଂ. | ସ୍ଥାନ | ଯୋଗ ଦେଇଥିବା କାରିଗର ସଂଖ୍ୟା | ସମୟ ଅବଧି |
|---|---|---|---|
| ୧ | ୨ | ୩ | ୪ |
| ୧. | ଜୟପୁର | ୨୮ | ୭.୬.୦୭ - ୧୧.୬.୦୭ ପର୍ଯ୍ୟନ୍ତ |
| ୨. | ବଲାଙ୍ଗିର | ୩୧ | ୭.୮.୦୭ - ୧୧.୮.୦୭ ପର୍ଯ୍ୟନ୍ତ |

**ଖ) ବାଣିଜ୍ୟ ପ୍ରଚେଷ୍ଟା**

**ପ୍ରଦର୍ଶନୀ**

ହସ୍ତଶିଳ୍ପ କାରିଗରମାନଙ୍କୁ ସେମାନଙ୍କ ସାମଗ୍ରୀର ବିକ୍ରିବଟା ସୁବିଧା ଯୋଗାଇ ଦେବା ଉଦ୍ଦେଶ୍ୟରେ ରାଜ୍ୟସ୍ତରୀୟ/ଜାତୀୟ ସ୍ତରୀୟ ପ୍ରଦର୍ଶନୀମାନ ଆୟୋଜନ କରାଯାଉଛି । ଏହି ପ୍ରଦର୍ଶନୀମାନଙ୍କରେ ଯୋଗଦାନ କରିଥିବା କାରିଗରମାନଙ୍କୁ ଆର୍ଥିକ ସହାୟତା ପ୍ରଦାନ କରାଯାଇଥିଲା । ଏହି ସମ୍ପର୍କୀୟ ବିବରଣୀ ନିମ୍ନରେ ପ୍ରଦାନ କରାଗଲା । ୨୦୦୭-୦୮ ବର୍ଷ ଜିଲ୍ଲାସ୍ତରୀୟ ପ୍ରଦର୍ଶନୀ ।

| କ୍ର. ସଂ. | ଆୟୋଜକ ଅନୁଷ୍ଠାନ | ପ୍ରଦର୍ଶନୀର ଉପଲକ୍ଷ ଓ ସ୍ଥାନ | ଅବଧି | କାରିଗର | ବିକ୍ରିବଟା ପରିମାଣ |
|---|---|---|---|---|---|
| ୧ | ୨ | ୩ | ୪ | ୫ | ୬ |
| ୧. | ଜିଲ୍ଲା ଶିଳ୍ପ କେନ୍ଦ୍ର, ଢେଙ୍କାନାଳ | ଢେଙ୍କାନାଳ ମହୋତ୍ସବ ଢେଙ୍କାନାଳ | ୨୮.୧୦.୦୭ରୁ ୫.୧୧.୦୭ | ୧୬ | ୪,୦୯,୦୩୫ |
| ୨. | ଜିଲ୍ଲା ଶିଳ୍ପ କେନ୍ଦ୍ର, ନବରଙ୍ଗପୁର | ମଣ୍ଡେଇ-୨୦୦୭ | ୧.୧୧.୦୭ରୁ ୩.୧୧.୦୭ | ୩୪ | ୧,୪୨,୫୦୦ |
| ୩. | ଜିଲ୍ଲା ଶିଳ୍ପ କେନ୍ଦ୍ର, ଭଦ୍ରକ | କାଳୀପୂଜା, ଭଦ୍ରକ | ୧୦.୧୧.୦୭ରୁ ୧୬.୧୧.୦୭ | ୧୫ | ୧,୭୮,୮୭୫ |
| ୪. | ଜିଲ୍ଲା ଶିଳ୍ପ କେନ୍ଦ୍ର, ପୁରୀ | ଅଁଳା ନବମୀ, ସାକ୍ଷୀଗୋପାଳ | ୧୮.୧୧.୦୭ରୁ ୨୧.୧୧.୦୭ | ୨୨ | ୪୬,୮୦୦ |
| ୫. | ଜିଲ୍ଲା ଶିଳ୍ପ କେନ୍ଦ୍ର, ପୁରୀ | ସମୁଦ୍ରତଟ ଯାତ୍ରା ପୁରୀ | ୨୩.୧୧.୦୭ରୁ ୨୭.୧୧.୦୭ | ୩୦ | ୧,୨୦,୬୭୦ |
| ୬. | ଜିଲ୍ଲା ଶିଳ୍ପ କେନ୍ଦ୍ର, କଟକ | ବାଲିଯାତ୍ରା, କଟକ | ୨୪.୧୧.୦୭ରୁ ୨.୧୨.୦୭ | ୫୧ | ୨୪,୨୮,୦୦୦ |
| ୭. | ଜିଲ୍ଲା ଶିଳ୍ପ କେନ୍ଦ୍ର, ଜଗତସିଂହପୁର | କଳିଙ୍ଗ ବାଲିଯାତ୍ରା, ପାରାଦ୍ୱୀପ | ୨୩,୧୧.୦୭ରୁ ୨୯.୧୧.୦୭ | ୪୫ | ୫,୦୩,୦୯୪ |
| ୮. | ଜିଲ୍ଲା ଶିଳ୍ପ କେନ୍ଦ୍ର, କଟକ | ବାରବାଟୀ ନୃତ୍ୟୋତ୍ସବ, କଟକ | ୨୦.୧୨.୦୭ରୁ ୨୬.୧୨.୦୭ | ୧୬ | ୫,୫୬,୫୦୦ |
| ୯. | ଜିଲ୍ଲା ଶିଳ୍ପ କେନ୍ଦ୍ର, ଗଞ୍ଜାମ | ଗଞ୍ଜାମ ମହୋତ୍ସବ | ୨୭.୧୨.୦୭ରୁ ୨.୧.୦୮ | ୮ | ୧,୩୯,୦୦୦ |
| ୧୦. | ଜିଲ୍ଲା ଶିଳ୍ପ କେନ୍ଦ୍ର, ପୁରୀ | ଶ୍ରୀକ୍ଷେତ୍ର ଉତ୍ସବ, ପୁରୀ | ୧୬.୧.୦୮ରୁ ୨୦.୧.୦୮ | ୨୨ | ୯୭,୭୩୦ |
| ୧୧. | ଜିଲ୍ଲା ଶିଳ୍ପ କେନ୍ଦ୍ର, କଟକ | ଗାନ୍ଧୀ ସ୍ମୃତିପୀଠ ମେଳା, ତେଲେଙ୍ଗାପେଣ୍ଠ | ୩୦.୧୨.୦୮ରୁ ୧.୨.୦୮ | ୨୯ | ୧,୫୧,୮୭୫ |

| | | | | | |
|---|---|---|---|---|---|
| ୧୨. | ଜିଲ୍ଲା ଶିଳ୍ପ କେନ୍ଦ୍ର, ଭଦ୍ରକ | ୪ର୍ଥ ଉତ୍ତର, ଓଡ଼ିଶା ବାଣିଜ୍ୟ ମେଳା, ଭଦ୍ରକ | ୫.୨.୦୮ରୁ ୧୧.୨.୦୮ | ୬ | ୯୬,୧୫୦ |
| ୧୩. | ଜିଲ୍ଲା ଶିଳ୍ପ କେନ୍ଦ୍ର, ରାଉରକେଲା | ବେଦବ୍ୟାସ ମେଳା | ୬.୩.୦୮ରୁ ୧୨.୩.୦୮ | ୩୦ | ୫,୩୨,୮୪୯ |
| | | | **ମୋଟ** | **୩୨୪** | **୫୪,୦୩,୦୭୮** |

**ରାଜ୍ୟସ୍ତରୀୟ ପ୍ରଦର୍ଶନୀ :**

| **କ୍ର. ସଂ.** | **ପ୍ରଦର୍ଶନୀର ନାମ** | **ସ୍ଥାନ ଯାତ୍ରାର ଉପଲକ୍ଷ** | **ଅବଧି** | **ଅଂଶଗ୍ରହଣ କରିଥିବା କାରିଗର ସଂଖ୍ୟା** | **ବିକ୍ରିବଟା ପରିମାଣ** |
|---|---|---|---|---|---|
| **୧** | **୨** | **୩** | **୪** | **୫** | **୬** |
| ୧. | ଟେରାକ, ଓଡ଼ିଶା'୦୭ | ପ୍ରଦର୍ଶନୀ ପଡ଼ିଆ, ଭୁବନେଶ୍ୱର | ୭.୯.୦୭ରୁ ୧୩.୯.୦୭ | ୮୨ | ୧୦,୨୩,୭୫୩ |
| ୨. | ମେଟା କ୍ରଫ୍ଟ'୦୭ | ପ୍ରଦର୍ଶନୀ ପଡ଼ିଆ, ଭୁବନେଶ୍ୱର | ୧୭.୯.୦୭ରୁ ୨୩.୯.୦୭ | ୫୩ | ୫,୫୨,୨୫୩ |
| ୩. | ଓଡ଼ିଶା ଏକସ୍ପୋ | ପ୍ରଦର୍ଶନୀ ପଡ଼ିଆ ଭୁବନେଶ୍ୱର | ୨.୧୧.୦୭ରୁ ୬.୧୧.୦୭ | ୨୮ | ୨,୨୦,୩୧୦ |
| ୪. | ଆଦିବାସୀ ମେଳା | ଆଦିବାସୀ ପଡ଼ିଆ ଭୁବନେଶ୍ୱର | ୨୬.୧.୦୮ରୁ ୯.୨.୦୮ | ୨୫ | ୩,୫୦,୦୦୦ |
| | | | **ମୋଟ** | **୧୮୮** | **୨୧,୪୬,୩୧୬** |

ରାଜ୍ୟ ବାହାରେ ଅନୁଷ୍ଠିତ ହୋଇଥିବା ପ୍ରଦର୍ଶନୀଗୁଡ଼ିକରେ ଅଂଶଗ୍ରହଣ କରିଥିବା କାରିଗରମାନଙ୍କ ସମ୍ପର୍କୀୟ ବିବରଣୀ :

| **କ୍ର. ସଂ.** | **ଆୟୋଜନ କରିଥିବା ଅନୁଷ୍ଠାନର ନାମ** | **ସ୍ଥାନ ଓ ପ୍ରଦର୍ଶନୀ ଉପଲକ୍ଷ** | **ଅବଧି** | **ଅଂଶଗ୍ରହଣ କରିଥିବା କାରିଗରଙ୍କ ସଂଖ୍ୟା** | **ବିକ୍ରିବଟା ପରିମାଣ** |
|---|---|---|---|---|---|
| **୧** | **୨** | **୩** | **୪** | **୫** | **୬** |
| ୧. | ଭାରତୀୟ ଆନ୍ତର୍ଜାତୀୟ ବାଣିଜ୍ୟ ମେଳା | ପ୍ରଗତି ମଇଦାନ | ୧୪.୧୧.୦୭ରୁ ୨୭.୧୧.୦୭ | ୧୨ | ୪,୭୯,୪୪୫ |
| ୨. | ପଶ୍ଚିମ ରାଜସ୍ଥାନ ଉଦ୍ୟୋଗ ହସ୍ତଶିଳ୍ପ ମେଳା, ଯୋଧପୁର | ହସ୍ତଶିଳ୍ପ ଉତ୍ସବ | ୫.୧.୦୮ରୁ ୧୪.୧.୦୮ | ୬ | ୧,୮୯,୦୪୫ |
| | | | **ମୋଟ** | **୧୮** | **୬,୬୮,୪୯୦** |

## ୨୦୦୭-୦୮ ବର୍ଷ ମଧ୍ୟରେ ଓରମାସ୍‌ଦ୍ୱାରା ଆୟୋଜିତ ପ୍ରଦର୍ଶନୀ

| କ୍ର. ସଂ. | ପ୍ରଦର୍ଶନୀର ନାମ | ସ୍ଥାନ ଓ ପ୍ରଦର୍ଶନୀ ଉପଲକ୍ଷ | ଅବଧି | ଭାଗ ନେଇ ଥିବା କାରିଗର ସଂଖ୍ୟା | ବିକ୍ରିବଟା |
|---|---|---|---|---|---|
| ୧ | ୨ | ୩ | ୪ | ୫ | ୬ |
| **ଜିଲ୍ଲାସ୍ତରୀୟ :** | | | | | |
| ୧. | ପଲ୍ଲୀମେଳା | ଚଇତ୍ର ପରବ, ବାରିପଦା | ୧୧.୪.୦୭ରୁ ୧୫.୪.୦୭ | ୧୫ | ୨,୧୮,୦୦୦ |
| ୨. | ଗ୍ରାମଶ୍ରୀ ମେଳା | ଶୀତଳଷଷ୍ଠୀ, ସୋନପୁର | ୧୭.୬.୦୭ରୁ ୨୨.୬.୦୭ | ୧୭ | ୧,୩୨,୫୦୦ |
| ୩. | ଜାତୀୟ ଗ୍ରାମଶ୍ରୀ ମେଳା | ରଥଯାତ୍ରା, ପୁରୀ | ୧୫.୭.୦୭ରୁ ୨୪.୭.୦୭ | ୨୦ | ୩,୭୫,୮୦୦ |
| ୪. | ପଲ୍ଲୀଶ୍ରୀ ମେଳା | ଅନୁଗୋଳ | ୧୬.୯.୦୭ରୁ ୨୨.୯.୦୭ | ୪ | ୧,୧୦,୦୦୦ |
| ୫. | ଗ୍ରାମଶ୍ରୀ ମେଳା | ରାଉରକେଲା | ୨.୧୦.୦୭ରୁ ୧୧.୧୦.୦୭ | ୬ | ୨,୦୫,୩୦୦ |
| ୬. | ଗ୍ରାମଶ୍ରୀ ମେଳା | ଢେଙ୍କାନାଳ | ୨୮.୧୦.୦୭ରୁ ୫.୧୧.୦୭ | ୧୩ | ୨,୮୦,୭୦୦ |
| ୭. | ପଲ୍ଲୀଶ୍ରୀ ମେଳା | ବଲାଙ୍ଗୀର | ୫.୧୧.୦୭ରୁ ୯.୧୧.୦୭ | ୨୫ | ୧,୬୧,୦୦୦ |
| ୮. | ପଲ୍ଲୀଶ୍ରୀ ମେଳା | କୋରାପୁଟ ପରବ | ୧୬.୧୧.୦୭ରୁ ୨୦.୧୧.୦୭ | ୧୨ | ୩,୫୦,୭୭୬ |
| ୯. | ପଲ୍ଲୀଶ୍ରୀ ମେଳା | ଗଜପତି | ୨୭.୧୨.୦୭ରୁ ୩୧.୧୨.୦୭ | ୧୨ | ୬୦,୦୦୦ |
| ୧୦. | ପଲ୍ଲୀଶ୍ରୀ ମେଳା | ବରଗଡ଼ | ୧୨.୧.୦୮ରୁ ୨୨.୧.୦୮ | ୧୦ | ୩,୧୦,୦୦୦ |
| ୧୧. | ପଲ୍ଲୀଶ୍ରୀ ମେଳା | କଳାହାଣ୍ଡି | ୧୪.୧.୦୮ରୁ ୧୮.୧.୦୮ | ୧୨ | ୩,୧୨,୦୦୦ |
| ୧୨. | ପଲ୍ଲୀଶ୍ରୀ ମେଳା | କେନ୍ଦୁଝର | ୧୯.୧.୦୮ରୁ ୨୩.୧.୦୮ | ୧୦ | ୧,୬୨,୦୦୦ |

**ରାଜ୍ୟସ୍ତରୀୟ**

| | | | | | |
|---|---|---|---|---|---|
| ୧. | ଦିଲ୍ଲୀହାଟ | ନୂଆଦିଲ୍ଲୀ | ୧୦.୪.୦୭ରୁ ୨୩.୪.୦୭ | ୬ | ୩,୩୫,୭୦୦ |
| ୨. | ସାରସ | କୋଲକାତା | ୨୯.୯.୦୭ରୁ ୧୪.୧୦.୦୭ | ୫ | ୩,୧୦,୦୦୦ |
| ୩. | ସାରସ | ଜୟପୁର | ୨୯.୯.୦୭ରୁ ୧୦.୧୦.୦୭ | ୨ | ୨,୦୦,୦୦୦ |
| ୪. | ସାରସ | ଭୋପାଳ | ୨୯.୯.୦୭ରୁ ୧୪.୧୦.୦୭ | ୩ | ୨,୯୦,୦୦୦ |
| ୫. | ସାରସ ଆଇ.ଆଇ.ଟି.ଏଫ୍. | ନୂଆଦିଲ୍ଲୀ | ୧୪.୧୧.୦୭ରୁ ୨୭.୧୧.୦୭ | ୧୦ | ୩,୨୫,୦୦୦ |
| ୬. | କଳିଙ୍ଗ ବାଲିଯାତ୍ରା | ପାରାଦୀପ | ୨୩.୧୧.୦୭ରୁ ୨୯.୧୧.୦୭ | ୧୮ | ୨,୦୩,୦୦୦ |
| ୭. | ଗାନ୍ଧୀ ଶିଳ୍ପ ବଜାର, କଟକ | କଟକ | ୨୪.୧୧.୦୭ରୁ ୨.୧୨.୦୭ | ୧୬ | ୨,୮୭,୫୦୦ |
| ୮. | ସାରସ | ମୁମ୍ବାଇ | ୨୨.୧୨.୦୭ରୁ ୧.୧.୦୮ | ୪ | ୩,୮୦,୬୦୦ |
| ୯. | ସାରସ | ଗୋଆ | ୨୭.୧୨.୦୭ରୁ ୭.୧.୦୮ | ୪ | ୩,୦୨,୭୦୦ |
| ୧୦. | ସାରସ | ଭୁବନେଶ୍ୱର | ୧୦.୧.୦୮ରୁ ୨୦.୧.୦୮ | ୩୬ | ୭,୧୦,୪୬୨ |
| ୧୧. | ଦିଲ୍ଲୀହାଟ, ସାରସ | ନୂଆଦିଲ୍ଲୀ | ୨୯.୧.୦୮ରୁ ୧୧.୨.୦୮ | ୧୦ | ୪,୮୫,୬୫୦ |
| ୧୨. | ଆଞ୍ଚଳିକ (ସାରସ) | ହାଇଦ୍ରାବାଦ | ୧୪.୨.୦୮ରୁ ୨୫.୨.୦୮ | ୩ | ୧,୭୬,୫୬୦ |
| ୧୩. | ଆଞ୍ଚଳିକ (ସାରସ) | ଡେରାଡୁନ | ୧୬.୨.୦୮ରୁ ୨୭.୨.୦୮ | ୧ | ୪୭,୩୦୦ |
| | | | **ମୋଟ** | **୧୧୪** | **୬୭,୬୨,୫୪୮** |
| | | | **ସର୍ବମୋଟ** | **୭୪୦** | **୧,୪୩,୦୫,୦୮୩** |

**ସହଯୋଗ ସମିତି ମାଧ୍ୟମରେ ବିକ୍ରୀ :**

କାରିଗରମାନଙ୍କଦ୍ୱାରା ପ୍ରସ୍ତୁତ ହେଉଥିବା ହସ୍ତଶିଳ୍ପ ସାମଗ୍ରୀଗୁଡ଼ିକର ବିକ୍ରୀବଟା ସମବାୟ ସମିତି ମାଧ୍ୟମରେ କରାଯାଇଥାଏ । ଉକ୍ତ ବର୍ଷର ସମବାୟ ସମିତି ମାଧ୍ୟମରେ ପ୍ରସ୍ତୁତ କରାଯାଇଥିବା ଓ ବିକ୍ରୀ କରାଯାଇଥିବା ହସ୍ତଶିଳ୍ପ ସାମଗ୍ରୀଗୁଡ଼ିକର ବିଶଦ ବିବରଣୀ ନିମ୍ନରେ ପ୍ରଦତ୍ତ କରାଗଲା ।

| ସମବାୟ ସମତି ସଂଖ୍ୟା | ସଭ୍ୟ ସଂଖ୍ୟା | ଉତ୍ପାଦିତ ସାମଗ୍ରୀ ପରିମାଣ | ବିକ୍ରୀ |
|---|---|---|---|
| ୧୮୯ | ୧୪,୨୦୭ | ୪୨୭.୧୮ | ୪୭୨.୭୨ |

**ଓଡ଼ିଶା ରାଜ୍ୟ ସମବାୟ ହସ୍ତଶିଳ୍ପ ନିଗମଦ୍ୱାରା ସଂଗ୍ରହ କରାଯାଇଥିବା ହସ୍ତଶିଳ୍ପ ସାମଗ୍ରୀ ଓ ବିକ୍ରୀର ପରିମାଣ**

| ସାମଗ୍ରୀ | ସଂଗ୍ରହ ପରିମାଣ (ଲକ୍ଷ ଟଙ୍କାରେ) | ବିକ୍ରୀ (ଲକ୍ଷ ଟଙ୍କାରେ) |
|---|---|---|
| ୧. ହସ୍ତଶିଳ୍ପ ସାମଗ୍ରୀ | ୧୪୫.୩୦ | ୨୧୭.୪୧ |
| ୨. ତନ୍ତୁବାୟ ସାମଗ୍ରୀ | ୨୫୬.୦୭ | ୩୮୩.୩୬ |
| **ମୋଟ** | **୪୦୧.୩୭** | **୬୦୦.୭୭** |

ରାଜ୍ୟ ବାହାରେ ଆୟୋଜିତ ହୋଇଥିବା ପ୍ରଦର୍ଶନୀରେ ଓଡ଼ିଶା ରାଜ୍ୟ ସମବାୟ ହସ୍ତଶିଳ୍ପ ନିଗମ ଆୟୋଜନ ଏବଂ ଅଂଶ ଗ୍ରହଣ କରିବା ସମ୍ବନ୍ଧୀୟ ତଥ୍ୟ ।

| କ୍ର. ସଂ. | ସ୍ଥାନ | ଅବଧି | ଭାଗ ନେଇଥିବା କାରିଗର ସଂଖ୍ୟା | ବିକ୍ରିବଟା ପରିମାଣ |
|---|---|---|---|---|
| **୧** | **୨** | **୩** | **୪** | **୫** |
| ୧. | ତିଳକ ସମ୍ପର୍କ ମନ୍ଦିର ପୁଣେ | ୮ରୁ ୧୯ ଅଗଷ୍ଟ ୨୦୦୭ | ଉତ୍କଳିକା | ୧.୦୩ ଲକ୍ଷ |
| ୨. | ରେସମ ଏସ୍. ପୋ | ୧୧ରୁ ୨୧ ଅକ୍ଟୋବର ୨୦୦୭ | ଉତ୍କଳିକା | ୨.୨୫ ଲକ୍ଷ |
| ୩. | ଜାତୀୟ ତନ୍ତୁବାୟ ଏସ୍‌ପୋର୍ଟ ପୁନେ | ୨୨ ଅକ୍ଟୋବରରୁ ୧୧ ନଭେମ୍ବର ୨୦୦୭ | ଉତ୍କଳିକା | ୩.୮୪ ଲକ୍ଷ |
| ୪. | ସିଲ୍କ ମାର୍କ ଏସ୍‌ପୋ, ମୁମ୍ବାଇ | ୧୨ରୁ ୧୭ ଡିସେମ୍ବର ୨୦୦୭ | ଉତ୍କଳିକା | ୧.୩୭ ଲକ୍ଷ |
| ୫. | ସିଲ୍କ ମାର୍କ ଏସ୍‌ପୋ, ପୁନେ | ୨୦ରୁ ୨୬ ଡିସେମ୍ବର ୨୦୦୭ | ଉତ୍କଳିକା | ୧.୭୯ ଲକ୍ଷ |
| ୬. | ଏଚ୍.ଏସ୍.ଆର୍.କ୍ଲବ୍, ବାଙ୍ଗାଲୋର | ୪ରୁ ୧୩ ଜାନୁଆରୀ ୨୦୦୮ | ୧୦ | ୬.୦୬ ଲକ୍ଷ |
| ୭. | କଳ୍ପତରୁ ହଲ ଲକ୍ଷ୍ନୌ | ୧୦ରୁ ୧୯ ଜାନୁଆରୀ ୨୦୦୮ | ୯ | ୬.୧୭ ଲକ୍ଷ |
| ୮. | ଲେକ୍‌ଓ୍ୱେ ଇଷ୍ଟେଟ, ଉଦୟପୁର, ରାଜସ୍ଥାନ | ୨ରୁ ୧୧ ଫେବୃଆରୀ ୨୦୦୮ | ୬ | ୪.୦୮ ଲକ୍ଷ |
| ୯. | ଆର୍ଟ ଗ୍ୟାଲେରୀ, ଅମ୍ରିତସର | ୨୧ ଫେବୃଆରୀରୁ ୨ ମାର୍ଚ୍ଚ ୨୦୦୮ | ୬ | ୪.୦୮ ଲକ୍ଷ |

| | | | | |
|---|---|---|---|---|
| ୧୦. | ଜୁଏଲର୍ସ ଆର୍ଟ ଗ୍ୟାଲେରୀ, ପୁନେ | ୨୮ ଫେବୃଆରୀରୁ ୧୦ ମାର୍ଚ୍ଚ ୨୦୦୮ | ୭ | ୫.୪୨ ଲକ୍ଷ |
| ୧୧. | ଲାଜପତ୍ ରାୟ ଭବନ, ଚଣ୍ଡୀଗଡ଼ | ୧୨ରୁ ୨୧ ଫେବୃଆରୀ ୨୦୦୮ | ୧୧ | ୭.୦୬ ଲକ୍ଷ |

**ଗ) ଆନୁଷ୍ଠାନିକ ଶିକ୍ଷା**

**୧. ଆଇ.ଟି.ଆଇ. ସମତୁଲ ତାଲିମ**

ହସ୍ତଶିଳ୍ପ ସାମଗ୍ରୀର ପ୍ରସ୍ତୁତି ଓ ବିକ୍ରୟ, ସାମଗ୍ରୀ ପ୍ରସ୍ତୁତ ସମୟରେ ଆବଶ୍ୟକ ହେଉଥିବା ତଦାରଖକାରୀ ଶିଳ୍ପପୁଞ୍ଜ ଓ ପରିଚାଳନା କ୍ଷେତ୍ରରେ ଆବଶ୍ୟକ ହେଉଥିବା ପରିଚାଳକଙ୍କ ଆବଶ୍ୟକତା ପୂରଣ ନିମିତ୍ତ ହସ୍ତଶିଳ୍ପ ପ୍ରକଳ୍ପ, ଭୁବନେଶ୍ୱରଠାରେ ଏକ ଆଇ.ଟି.ଆଇ. ସମତୁଲ ତାଲିମ ଆରମ୍ଭ କରାଯାଇଛି । ଉକ୍ତ ପାଠ୍ୟକ୍ରମ ରାଜ୍ୟ ବୈଷୟିକ ଶିକ୍ଷା ଓ ତାଲିମ ପରିଷଦ ସହିତ ଅନୁବନ୍ଧିତ ଅଟେ । ଚଳିତବର୍ଷ ୨୭ ଜଣ ଛାତ୍ର ବିଭିନ୍ନ କଳା ବିଷୟରେ ସେମାନଙ୍କ ତାଲିମ ସମାପ୍ତ କରିଛନ୍ତି । ଶିଳ୍ପ ତାଲିମ କ୍ଷେତ୍ରରେ ବିଭିନ୍ନ କଳାରେ ପ୍ରତ୍ୟକ୍ଷ ତାଲିମ ପ୍ରଦାନ ସହ କମ୍ପ୍ୟୁଟର, ସମାଜ ବିଜ୍ଞାନ, ମାର୍କେଟିଙ୍ଗ୍ ଏବଂ ଭାବ ଆଦାନପ୍ରଦାନ ସମ୍ବନ୍ଧୀୟ ତାଲିମ୍ ଇତ୍ୟାଦି ପ୍ରଦାନ କରାଯାଇଥାଏ ।

**୨. ପାରମ୍ପରିକ ପାଠ୍ୟକ୍ରମ :**

| | **ପାଠ୍ୟକ୍ରମ** | **ତାଲିମ ପାଇଥିବା କାରିଗର ସଂଖ୍ୟା** |
|---|---|---|
| ୧. | ୫ଟି ହସ୍ତଶିଳ୍ପ ବିଷୟରେ ୨ ବର୍ଷିଆ ପାଠ୍ୟକ୍ରମ | ୩୪ |
| ୨. | କଟକ, ପୁରୀ, କେନ୍ଦୁଝର ଓ ବାଲେଶ୍ୱର ଜିଲ୍ଲାରେ ୨ ବର୍ଷିଆ ପଥର ଖୋଦେଇ, କଂସା ପିତଳ, କାଷ୍ଠ ଖୋଦେଇ ଓ ଶଙ୍ଖ ଶାମୁକାରେ ତାଲିମ | ୧୭ |
| ୩. | କେନ୍ଦ୍ରାପଡ଼ା, ବାଲେଶ୍ୱର, କଟକ, କେନ୍ଦୁଝର, ଜଗତ୍‌ସିଂହପୁର, ନୟାଗଡ଼, ପୁରୀ, ଢେଙ୍କାନାଳ ଓ ଖୋର୍ଦ୍ଧା ଜିଲ୍ଲାରେ ହସ୍ତଶିଳ୍ପର ୧ ବର୍ଷିଆ ତାଲିମ । | ୧୬୭ |
| | **ଅନ୍ୟାନ୍ୟ କାର୍ଯ୍ୟାବଳୀ** | **୨୧୮** |

**୧. ଡିଜାଇନ୍ ସେଲ୍ ପ୍ରତିଷ୍ଠା**

ଏନାଇଡ଼ି, ଅହମ୍ମଦାବାଦ ସହଯୋଗରେ ଭୁବନେଶ୍ୱରଠାରେ ଏକ ଡିଜାଇନ୍ ସେଲ୍ ପ୍ରତିଷ୍ଠା ପାଇଁ ଚେଷ୍ଟା କରାଯାଉଛି ।

୨. ମାଇ ପରିଯୋଜନାରେ ବିପୁଳ ବିପଣନ ପାଇଁ ବ୍ୟବସ୍ଥା :

ମାଇ ଯୋଜନାରେ ନିମ୍ନଲିଖିତ କାର୍ଯ୍ୟକ୍ରମମାନ ଗ୍ରହଣ କରାଯାଉଛି -

୧) ଘରୋଇ ଶିଳ୍ପ ମେଳାରେ ଯୋଗଦାନ

କ) ଆଇ.ଏଚ୍.ଜି.ଏଫ୍. (ସ୍ପ୍ରିଙ୍ଗ୍) ୦୭ ଗ୍ରେଟର ନୋଇଡ଼ା ନୂଆଦିଲ୍ଲୀ ।

ଖ) ଗ୍ରେଟର ନୋଇଡ଼ା ନୂଆଦିଲ୍ଲୀଠାରେ ଅନୁଷ୍ଠିତ ହୋଇଥାଏ । 'ହୋମ୍ ଆଣ୍ଡ୍ ବିଅଣ୍ଡ' ୦୭ ବାଣିଜ୍ୟ ମେଳା ।

ଗ) ଗ୍ରେଟର ନୋଇଡ଼ା ନୂଆଦିଲ୍ଲୀଠାରେ ଅନୁଷ୍ଠିତ ହୋଇଥିବା ଆଇ.ଏଚ୍.ଜି.ଏଫ୍. (ଅଟମ) ୦୭ ବାଣିଜ୍ୟ ମେଳା ।

ଘ) ପ୍ରଗତି ମଇଦାନ ନୂଆଦିଲ୍ଲୀଠାରେ ଅନୁଷ୍ଠିତ ଆଇ.ଆଇ.ଟି.ଏଫ୍. ୦୭ ବାଣିଜ୍ୟ ମେଳା ।

୨) କୁଆଲାମ୍ପୁର (ମାଲେସିଆ)ଠାରେ ଅନୁଷ୍ଠିତ ଗ୍ଲୋବାଲ୍ ଇଣ୍ଡିଆ ସପିଙ୍ଗ୍ ଫେଷ୍ଟିଭାଲ ।

୩) ୪ରୁ ୫ ମିନିଟ୍ ଅବଧିର ୪ ଗୋଟି ହସ୍ତଶିଳ୍ପରେ ଏନାଇଡ୍ ଅହମ୍ମଦାବାଦଦ୍ୱାରା ପ୍ରାମାଣିକ ଚଳଚ୍ଚିତ୍ର ପ୍ରସ୍ତୁତି ।

୪) ଓକାକ୍ ଭୁବନେଶ୍ୱର ସହଯୋଗରେ ଓଡ଼ିଶା ରାଜ୍ୟ ହସ୍ତଶିଳ୍ପ ସମବାୟ ନିଗମର ୱେବ୍‌ସାଇଟ୍ ବିକାଶ ।

୫) ହସ୍ତଶିଳ୍ପ ସାମଗ୍ରୀର ତାଲିକା ପ୍ରସ୍ତୁତି ଚାଲିଛି ।

**ଓଡ଼ିଶା ରାଜ୍ୟ ହସ୍ତଶିଳ୍ପ ନିଗମର ପୁନଃବିନ୍ୟାଶ ଓ ଉତ୍କଳିକାର ପୁନରୁଦ୍ଧାର :**

ଆଇନଗତ କରଜ, କର୍ମଚାରୀମାନଙ୍କ ବକେୟା ଦରମା, ବିକ୍ରୀବଟା ବ୍ୟବସ୍ଥା ଓ ଉତ୍କଳିକା ଶାଖାଗୁଡ଼ିକର ପୁନରୁଦ୍ଧାର ପାଇଁ ଟ.୭୭.୦୦ ଲକ୍ଷ ଓଡ଼ିଶା ରାଜ୍ୟ ସମବାୟ ହସ୍ତଶିଳ୍ପ ନିଗମକୁ ପ୍ରଦାନ କରାଯାଇଛି । ଉତ୍କଳିକା, ଭୁବନେଶ୍ୱର ଶାଖାର ପୁନରୁଦ୍ଧାର କରାଯାଇଅଛି ।

**ଘ) କତାସ୍ତରୀୟ**

**ତାଲିମ ତଥା ପ୍ରଦର୍ଶନ ସେବା ଉପକେନ୍ଦ୍ର ମାଧମରେ ତାଲିମ :**

ଓଡ଼ିଶାର ୩ ଗୋଟି ଜିଲ୍ଲାରେ ୩ ଗୋଟି ସ୍ଥାନରେ ତାଲିମ୍ ତଥା ପ୍ରଦର୍ଶନ ସେବା ଉପକେନ୍ଦ୍ର କରୁଛି ଯଥା- ଭୋଗରାଇ (ବାଲେଶ୍ୱର ଜିଲ୍ଲା), ଗୋଳାବନ୍ଧ (ଗଞ୍ଜାମ ଜିଲ୍ଲା) ଏବଂ ବାଲିକୁଦା (ଜଗତ୍‌ସିଂହପୁର ଜିଲ୍ଲା) । ଏହି ତାଲିମ୍ କେନ୍ଦ୍ରଗୁଡ଼ିକରେ ସମୁଦାୟ ୧୨୦ ଜଣଙ୍କ ପାଇଁ ତାଲିମ ବ୍ୟବସ୍ଥା ଅଛି । ୨୦୦୭-୦୮ ଆର୍ଥିକ ବର୍ଷରେ ସମୁଦାୟ ୮୭ ଜଣ ଛାତ୍ର ଓ ଛାତ୍ରୀ କୃତକାର୍ଯ୍ୟ ହୋଇଛନ୍ତି । ଏତଦ୍‌ବ୍ୟତୀତ ପୁରୀ ଜିଲ୍ଲା ତେଇସିପୁରଠାରେ ରାଜ୍ୟସ୍ତରୀୟ କତା ତାଲିମ୍ ଏବଂ ରୂପାଙ୍କନ କେନ୍ଦ୍ରରେ ବର୍ତ୍ତମାନ ବର୍ଷିକିଆ ଉଚ୍ଚତର ପାଠ୍ୟକ୍ରମ ତା.୦୧.୧୦.୨୦୦୭ରିଖଠାରୁ ଆରମ୍ଭ ହୋଇ ଆସନ୍ତା ତା.୩୦.୯.୦୮ରେ ସମାପ୍ତ ହେବ । ଏହି ତାଲିମ୍ କେନ୍ଦ୍ରରେ ୩୦ ଜଣ ତାଲିମ୍ ନେବାପାଇଁ ବ୍ୟବସ୍ଥା ଅଛି ଏବଂ ଏହି ବର୍ଷ ୨୯ ଜଣ ଛାତ୍ର ଓ ଛାତ୍ରୀ ତାଲିମ୍ ନେଉଅଛନ୍ତି ।

ଏତଦ୍‌ବ୍ୟତୀତ ଏହି ତାଲିମ୍ କେନ୍ଦ୍ରରୁ କୃତକାର୍ଯ୍ୟ ହେଉଥିବା ଛାତ୍ର ଓ ଛାତ୍ରୀମାନଙ୍କୁ ଥଇଥାନ ପାଇଁ ପ୍ରତ୍ୟେକ ତାଲିମ୍ କେନ୍ଦ୍ରକୁ ଏକ କତା ଉତ୍ପାଦନ କେନ୍ଦ୍ର ସ୍ଥାପନ କରାଯାଇଅଛି ।

| କ୍ର. ସଂ. | ତାଲିମ୍ କେନ୍ଦ୍ରର ନାମ | କୃତକାର୍ଯ୍ୟ ଛାତ୍ର ଓ ଛାତ୍ରୀ ସଂଖ୍ୟା | ବହିର୍ଭ୍ରମଣ | ବର୍ତ୍ତମାନ ଟ୍ରେନିଂ ନେଉଥିବା ସଂଖ୍ୟା |
|---|---|---|---|---|
| ୧ | ୨ | ୩ | ୪ | ୫ |
| ୧. | ତାଲିମ୍ ତଥା ପ୍ରଦର୍ଶନ ତଥା ସେବା ଉପକେନ୍ଦ୍ର, ଗୋଳାବନ୍ଧ | ୨୮ | ସାକ୍ଷୀଗୋପାଳକୁ (୨୮) | ୨୦ |
| ୨. | ତାଲିମ୍ ତଥା ପ୍ରଦର୍ଶନ ତଥା ସେବା ଉପକେନ୍ଦ୍ର, ଭୋଗରାଇ | ୩୪ | ସାକ୍ଷୀଗୋପାଳକୁ (୩୪) | ୨୦ |
| ୩. | ତାଲିମ୍ ତଥା ପ୍ରଦର୍ଶନ ତଥା ସେବା ଉପକେନ୍ଦ୍ର, ବାଲିକୁଦା | ୨୫<br>୨୫ | ସାକ୍ଷୀଗୋପାଳକୁ (୧୩) | ୨୦ |
| ୪. | ରାଜ୍ୟସ୍ତରୀୟ ତାଲିମ ଏବଂ ରୂପାଙ୍କନ କେନ୍ଦ୍ର, ତେଇସିପୁର | ୨୫ | କେରଳକୁ (୨୫) | ୨୯ |

ଉପରୋକ୍ତ ୪ ଗୋଟି ତାଲିମ୍ କେନ୍ଦ୍ରର ପୁନରୁଦ୍ଧାର ଏବଂ ଆଧୁନିକୀକରଣ ପାଇଁ ଏହି ବର୍ଷରେ ୪.୬୦ ଲକ୍ଷ ଟଙ୍କା ଉଠାଣ କରାଯାଇଛି ।

**କତାଶିଳ୍ପର କୁଶଳୀ କାରିଗର ଥଇଥାନ ଯୋଜନା :**

୨୦୦୭-୦୮ ଆର୍ଥିକ ବର୍ଷରେ ୧୯୦ ଜଣ କତା କାରିଗରଙ୍କର ଥଇଥାନ ପାଇଁ ମୂଳ ଜମା ବାବଦରେ ଟ.୫୦୦୦/- ହାରରେ ସମୁଦାୟ ଟ.୯.୫୦ ଲକ୍ଷ ଟଙ୍କା ମଞ୍ଜୁର କରାଯାଇ ବିଭିନ୍ନ ବ୍ୟାଙ୍କ ଜରିଆରେ ଟ.୩୮.୦୦ ଲକ୍ଷ ଟଙ୍କା କାର୍ଯ୍ୟକାରୀ ମୂଳଧନ ବାବଦକୁ ଦିଆଯାଇଅଛି ।

**ପ୍ରଦର୍ଶନୀ ଓ ପ୍ରଚାର :**

କତା କାରିଗରମାନେ ବିଭିନ୍ନ ପ୍ରଦର୍ଶନୀ ଯଥା- 'ପରବ' କୋରାପୁଟଠାରେ, ବାଲିଯାତ୍ରା କଟକଠାରେ, ସମୁଦ୍ରକୂଳ ପର୍ବ ପୁରୀଠାରେ, ପ୍ରଦର୍ଶନୀ ରାଉରକେଲାଠାରେ ଯୋଗଦାନ କରି ସେମାନଙ୍କର କତା ସାମଗ୍ରୀ ବିକ୍ରୟ କରିଥିଲେ । ଏହା ସହିତ ୩୩ ଗୋଟି ସଂସ୍ଥା ପ୍ରଦର୍ଶନୀରେ ଭାଗ ନେଇ ସମୁଦାୟ ୯.୬୦ ଲକ୍ଷ ଟଙ୍କା ମୂଲ୍ୟର ବିକ୍ରିବଟା କରିଥିଲେ ।

**ଶିଳ୍ପୋଦ୍ୟୋଗୀ ବିକାଶ ତାଲିମ୍ କାର୍ଯ୍ୟକ୍ରମ**

୩ ଗୋଟି ଶିଳ୍ପୋଦ୍ୟୋଗୀ ବିକାଶ ତାଲିମ୍ କାର୍ଯ୍ୟକ୍ରମ ବାଲିକୁଦା (ଜଗତ୍‌ସିଂହପୁର), ପୁରୀ ଏବଂ ରାଜ୍ୟ କଥା ତାଲିମ ଏବଂ ରୂପାଙ୍କନ କେନ୍ଦ୍ର ତେଇଶିପୁରଠାରେ କରାଯାଇଥିଲା । ଏହି ବାବଦରେ ୧.୯୫ ଲକ୍ଷ ଟଙ୍କା ଖର୍ଚ୍ଚ କରାଯାଇ ୬୫ ଜଣ ଉଦ୍ୟୋଗୀଙ୍କୁ ତାଲିମ୍ ପ୍ରଦାନ କରାଯାଇଥିଲା ।

**କତା ପୁଞ୍ଜ ବିକାଶ ଯୋଜନା :**

**କତା କଳା**

| କ୍ର. ସଂ. | କତା ପୁଞ୍ଜର ନାମ | କତା କଳା ଏବଂ ପାପୋଛ ତିଆରି | କତା ଖେଳନା ତିଆରି | ସ୍ୱୟଂ ସହାୟକ ଗୋଷ୍ଠୀ | କାରିଗର |
|---|---|---|---|---|---|
| ୧ | ୨ | ୩ | ୪ | ୫ | ୬ |
| ୧. | ଶିଶୁପାଳଗଡ଼ କତା ପୁଞ୍ଜ, ଭୁବନେଶ୍ୱର | ୩ | ୧ | ୪ | ୬୦ |
| ୨. | ପୁରୀ କତା ପୁଞ୍ଜ, ପୁରୀ | ୨ | ୧ | ୩ | ୪୫ |
| ୩. | ଗୁଆଳୀ ଗୋରଡ଼ା କତା ପୁଞ୍ଜ, ସତ୍ୟବାଦୀ, ପୁରୀ | ୨ | ୧ | ୩ | ୪୫ |
| ୪. | ପ୍ରତାପନଗରୀ କତା ପୁଞ୍ଜ, କଟକ | ୨ | ୧ | ୩ | ୪୫ |
| ୫. | ଗୋବିନ୍ଦ ରାମପାଟଣା କତା ପୁଞ୍ଜ, ନିଆଳି, କଟକ | ୨ | ୧ | ୩ | ୪୫ |
| | | **୧୧** | **୫** | **୧୬** | **୨୪୦** |

**ବହିର୍ଭ୍ରମଣ :**

ଜଗତ୍‌ସିଂହପୁର ଏବଂ ପୁରୀ ଜିଲ୍ଲାରୁ ୪୫ ଜଣ କାରିଗରଙ୍କୁ କେରଳ ଓ ତାମିଲନାଡୁକୁ ବହିର୍ଭ୍ରମଣ ମାଧ୍ୟମରେ ଉନ୍ନତ ବୈଷୟିକ ଜ୍ଞାନ ଆହରଣ କରିବା ପାଇଁ ପଠାଯାଇଥିଲା ।

**ବ୍ୟବସାୟିକ ଉନ୍ନତିକରଣ ସହାୟତା**

ଚଳିତ ଆର୍ଥିକ ବର୍ଷରେ ବ୍ୟବସାୟିକ ଉନ୍ନତିକରଣ ସହାୟତା ବାବଦରେ ଓଡ଼ିଶା କତା ସମବାୟ ନିଗମ ଓ କେନ୍ଦେଶ୍ୱରୀ ମହିଳା କତା ସମବାୟ ସମିତିକୁ ରାଜ୍ୟ ଯୋଜନାରେ ଟ.୬୧,୪୯୪/- ଏବଂ କେନ୍ଦ୍ରୀୟ ଯୋଜନାରେ ଟ.୬୧,୪୯୪ ସହାୟତା ଦିଆଯାଇଅଛି ।

**ଅନ୍ୟାନ୍ୟ କାର୍ଯ୍ୟକ୍ରମ**

୧. କୋଚିଠାରେ ଅନୁଷ୍ଠିତ ଆଇ.ଆଇ.ସି.ଏଫ୍.୦୭ ମେଳାରେ ତିନିଗୋଟି କତା କର୍ଣ୍ଣେଇ ସ୍ୱୟଂ ସହାୟକ ଗୋଷ୍ଠୀ ଯୋଗ ଦେଇଥିଲେ ଏବଂ ଉକ୍ତ ମେଳାରେ ଦ୍ୱିତୀୟ ସ୍ଥାନ ପାଇଁ ପୁରସ୍କୃତ ହୋଇଥିଲେ ।

୨. ଚଳିତ ଆର୍ଥିକ ବର୍ଷରେ ଗୃହ ଓ ସରଞ୍ଜାମ ଉନ୍ନତିକରଣ ସହାୟତା ଯୋଜନାରେ ରାଜ୍ୟ କତା ତାଲିମ ଓ ରୂପାଙ୍କନ କେନ୍ଦ୍ର ତେଇଶିପୁରରେ ରଶି ପ୍ରସ୍ତୁତି ଗୃହ, ବିକ୍ରୟ ଓ ଗୋବାକ୍ଷ ଗୃହ ଏବଂ ବିଦ୍ୟୁତ୍ ଚାଳିତ ଚରଖା ଯୋଗାଇ ଦିଆଯାଇଥିଲା ।

୩. କତାଶିଳ୍ପ କାର୍ଯ୍ୟରତ ବୈଷୟିକ କର୍ମଚାରୀମାନଙ୍କୁ ଚଳିତ ବର୍ଷ ଜୁନ୍ ମାସରେ କତାଶିଳ୍ପର ନୂତନ ତଥ୍ୟ ପ୍ରଦାନ ସହ ତାଲିମ୍ ଦିଆଯାଇଥିଲା ।

୪. କତା ବୈଷୟିକଜ୍ଞାନ ସମ୍ବଳିତ ଏକ ପୁସ୍ତକ 'କତା ସାମଗ୍ରୀ ପ୍ରସ୍ତୁତି ପ୍ରଣାଳୀ'ର ପ୍ରକାଶନ କରାଯାଇଅଛି । କତା ତାଲିମ୍ କେନ୍ଦ୍ରମାନଙ୍କ ପାଇଁ ଉଦିଷ୍ଟ ପାଠ୍ୟ ଖସଡ଼ାର ପୁନଃ ନିରକ୍ଷଣ କରାଯାଇଛି ।

୫. ନୀଳାଚଳ ନାରୀ ସେବା ସମିତିର ସଭାନେତ୍ରୀ ଶ୍ରୀମତୀ କୁନ୍ତଳା କୁମାରୀ ଆଚାର୍ଯ୍ୟଙ୍କୁ କୟର ବୋର୍ଡ଼ଙ୍କଦ୍ୱାରା 'କୟର ମିତ୍ର ଉପାଧି ଦିଆଯାଇ ସମ୍ମାନିତ କରାଯାଇଛି ।

୬. ପୁରୀ ଜିଲ୍ଲାର କତା ଶିଳ୍ପ ସର୍ବେକ୍ଷଣ କରିବା ପାଇଁ ପଦକ୍ଷେପ ନିଆଯାଇଅଛି ।

**ଢ) ଲବଣ ଶିଳ୍ପ**

୧. ଲବଣ ଶିଳ୍ପ ଉନ୍ନୟନ ନିମିତ୍ତ ମିଳିତ କାର୍ଯ୍ୟକ୍ରମ :

ଏହି କାର୍ଯ୍ୟକ୍ରମ ଅନୁଯାୟୀ ନିମ୍ନଲିଖିତ କାର୍ଯ୍ୟସବୁ ହାତକୁ ନିଆଯାଇଅଛି ।

କ) ଗଞ୍ଜାମ ଲବଣ ଶିଳ୍ପକ୍ଷେତ୍ର ପ୍ଲାଟ୍‌ଫର୍ମ ନଂ. ୧ରେ ଶ୍ରମିକ ବିଶ୍ରାମ କକ୍ଷ ନିର୍ମାଣ ଆନୁମାନିକ ଖର୍ଚ୍ଚ ଟ୭୩,୪୦୦/- ।

ଖ) ଗୋଖା ଲବଣ ଶିଳ୍ପକ୍ଷେତ୍ରରେ ପ୍ଲାଟଫର୍ମ ନଂ ୧୦ର ଉଚ୍ଚତା ବୃଦ୍ଧି ଆନୁମାନିକ ଖର୍ଚ୍ଚ ଟ୨,୦୦.୦୦୦/- ।

**୨. ନମକ ମଜଦୁର ଆବାସ ଯୋଜନା :**

ଦଶମ ପଞ୍ଚବାର୍ଷିକ ଯୋଜନାରେ ଅନୁମୋଦିତ ଗୃହ ମଧ୍ୟରୁ ୨୦୦୭-୦୮ ଆର୍ଥିକ ବର୍ଷରେ ୭୫ ଗୋଟି ବାସଗୃହ ନିର୍ମାଣ ସମ୍ପୂର୍ଣ୍ଣ ହୋଇଅଛି ।

ଏହି ଯୋଜନାରେ ୨୦୦ଟି ବାସଗୃହ ଓଡ଼ିଶାରେ ଲବଣ ଶ୍ରମିକମାନଙ୍କୁ ଯୋଗାଇବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଛି । ଗଞ୍ଜାମ ଓ ବାଲେଶ୍ୱର ଜିଲ୍ଲାରେ ୧୪୩ଟି ହିତାଧିକାରୀ ଚୟନ କରାଯାଇଛି । ଭାରତ ସରକାରଙ୍କ ଲବଣ ଆୟୁକ୍ତଙ୍କ ନିର୍ଦ୍ଦେଶାନୁଯାୟୀ କାର୍ଯ୍ୟାରମ୍ଭ ହୋଇନାହିଁ ।

**୩. ଲବଣ ଶିଳ୍ପର ଉନ୍ନତିକରଣ :**

ଲବଣ ଶିଳ୍ପ ସମବାୟ ସମିତିମାନଙ୍କର ଭିତ୍ତିଭୂମିର ବିକାଶ ଯଥା- ପମ୍ପ ଗୃହ ନିର୍ମାଣ ଟ୍ରାକ୍ଟର ଓ ଟ୍ରଲି ରିକ୍ସା ଆଦି ଯୋଗାଇ ଦେବା ନିମନ୍ତେ ଟ.୯.୦୦ ଲକ୍ଷ ମଞ୍ଜୁର ହୋଇ ପ୍ରଦାନ କରାଯାଇଛି । ଲବଣ ଶିଳ୍ପ ସମବାୟ ସମିତିକୁ ଟ.୫୦,୦୦୦/- ସୁଧ ଅନୁଦାନ ବାବଦରେ ପ୍ରଦାନ କରାଯାଇଅଛି ।

**୪. ଆଦର୍ଶ (ମଡ଼େଲ୍) ଲବଣ କ୍ଷେତ୍ର :**

ଉନ୍ନତମାନର ଲବଣ ଉତ୍ପାଦନ ଏବଂ ଉତ୍ପାଦନ ହାର ବୃଦ୍ଧି ପ୍ରଦର୍ଶନ କରିବା ପାଇଁ ଗଞ୍ଜାମ ଜିଲ୍ଲାରେ ଟ.୧୦.୮୦ ଲକ୍ଷ ବ୍ୟୟରେ ଆଦର୍ଶ ଲବଣ କ୍ଷେତ୍ର ନିର୍ମିତ ହୋଇଛି ।

**୫. ଲବଣ ଉତ୍ପାଦନ :**

୨୦୦୭ ଲବଣ ଉତ୍ପାଦନ ବର୍ଷରେ ରାଜ୍ୟରେ ୩୧୬୧୫ ମେଟ୍ରିକ୍ ଟନ୍ ଲୁଣ ଉତ୍ପାଦିତ ହୋଇଅଛି ।

**ଚ) ଓଡ଼ିଶା ରାଜ୍ୟ ସମବାୟ ହସ୍ତଶିଳ୍ପ ନିଗମ ଲିଃ, ଓ.ଏସ୍.ସି.ଏଚ୍.ସି. ଭୁବନେଶ୍ୱର :**

୧. ଓଡ଼ିଶା ରାଜ୍ୟ ସମବାୟ ହସ୍ତଶିଳ୍ପ ନିଗମ ଲିଃ ରାଜ୍ୟର ଏକମାତ୍ର ଶୀର୍ଷ ସମିତି ଯାହାକି ୧୯୫୯ ମସିହାଠାରୁ ଚାଲୁଅଛି । ନିଗମର ପ୍ରଧାନ ଉଦ୍ଦେଶ୍ୟ ହେଉଛି, ରାଜ୍ୟ ମଧରେ ବିଭିନ୍ନ ପ୍ରକାରର ହସ୍ତଶିଳ୍ପ ସାମଗ୍ରୀ ବ୍ୟବସାୟିକ ଭିତ୍ତିରେ ସଂଗଠିତ ଓ ପ୍ରସାର କରିବା, ତଥା ଦେଶ ଓ ବିଦେଶରେ ହସ୍ତଶିଳ୍ପ ସାମଗ୍ରୀର ବିକ୍ରୟ ତଥା ପ୍ରସାର କରିବା ।

୨. ନିଗମର ୫୦୦.୦୦ ଲକ୍ଷ ଟଙ୍କାର ପ୍ରାଧିକୃତ ପୁଞ୍ଜିର ବ୍ୟବସ୍ଥା ଥିବାବେଳେ ସେଥିମଧ୍ୟରୁ ସମଦତ୍ତ ପୁଞ୍ଜି ୨୬୯.୮୦ ଲକ୍ଷ ଟଙ୍କା ନିମ୍ନ ଲିଖିତ ଭାବରେ ଅଟେ ।

| | | |
|---|---|---|
| କେନ୍ଦ୍ର ସରକାର | - | ୧୩୭.୭୦ ଲକ୍ଷ ଟଙ୍କା |
| ରାଜ୍ୟ ସରକାର | - | ୧୩୨.୦୦ ଲକ୍ଷ ଟଙ୍କା |
| ସମିତି ସଭ୍ୟ | - | ୦.୧୦ ଲକ୍ଷ ଟଙ୍କା |
| **ମୋଟ** | **-** | **୨୬୯.୮୦ ଲକ୍ଷ ଟଙ୍କା** |

୩. ନିଗମର ୧୬ ଗୋଟି ବିକ୍ରୟ କେନ୍ଦ୍ର 'ଉତ୍କଳିକା' ମାଧ୍ୟମରେ ରାଜ୍ୟ ତଥା ବାହାରେ ଅବସ୍ଥିତ ।

୪. ୨୦୦୭-୦୮ ଆର୍ଥିକ ବର୍ଷରେ କ୍ରୟ ଓ ବିକ୍ରୟ ସାଫଲ୍ୟ ନିମ୍ନରେ ପ୍ରଦତ୍ତ କରାଗଲା ।

| **କ୍ରୟ** | **ବିକ୍ରୟ** | **(ଲକ୍ଷରେ)** |
|---|---|---|
| ହସ୍ତତନ୍ତ - ୨୩୪.୩୪ | ୩୮୩.୩୭ | |
| ହସ୍ତଶିଳ୍ପ - ୧୨୯.୭୦ | ୨୧୭.୪୧ | |
| **ମୋଟ - ୩୬୪.୦୪** | **୬୦୦.୭୮** | |

୫. ନିଗମର ବ୍ୟୟଭାର ବିଶେଷକରି ଦରମା ଓ ମଜୁରୀ ବାବଦରେ ଖର୍ଚ୍ଚ ବିକ୍ରୟ ସାଫଲ୍ୟ ସହିତ ସମାନୁପାତିକ ନୁହେଁ । ଏହାର ପ୍ରଭାବ ବିଗତ କେତେ ବର୍ଷରୁ ସୁସ୍ପଷ୍ଟ ।

ଏହାକୁ ସନ୍ତୁଳିତ କରିବା ପାଇଁ ନିଗମକୁ ପୁନରୁଦ୍ଧାର କରାଯାଇଅଛି । ଓଡ଼ିଶାର ବିଭିନ୍ନ ଜିଲ୍ଲା ବିଶେଷ କରି କେ.ବି.କେ. ଜିଲ୍ଲା ଓ ସ୍ୱୟଂ ସହାୟକ ଗୋଷ୍ଠୀମାନଙ୍କଠାରୁ ବିଭିନ୍ନ ହସ୍ତଶିଳ୍ପ ଓ ହସ୍ତତନ୍ତ ସାମଗ୍ରୀ କ୍ରୟ କରିବା ପାଇଁ ସ୍ୱତନ୍ତ୍ର ପ୍ରଚେଷ୍ଟା କରାଯାଇଅଛି । ନୂଆଦିଲ୍ଲୀଠାରେ ଥିବା ଉତ୍କଳିକାକୁ ନବୀକରଣ କରାଯାଇଅଛି । ଏହାବ୍ୟତୀତ ଭୁବନେଶ୍ୱରସ୍ଥିତ ଉତ୍କଳିକାକୁ ମଧ୍ୟ ନବୀକରଣ କରାଯାଇଅଛି ଏବଂ କ୍ରୟର ସାଫଲ୍ୟ ସନ୍ତୋଷଜନକ ଅଟେ ।

୬. ଓଡ଼ିଶା ତିଆରି ହସ୍ତଶିଳ୍ପର ଆନ୍ତର୍ଜାତୀୟ ସ୍ତରରେ ପ୍ରଚାର ଓ ପ୍ରସାର ତଥା ରପ୍ତାନୀ ପାଇଁ ଦେଶ ବାହାରେ ପ୍ରଦର୍ଶନୀ ଆୟୋଜନ କରିବାକୁ ସ୍ଥିର କରାଯାଇଛି ।

୭. ରାଜ୍ୟର ହସ୍ତଶିଳ୍ପ କାରିଗରମାନଙ୍କୁ 'ଫଟୋ ପରିଚୟ ପତ୍ର' ପ୍ରଦାନ ନିମନ୍ତେ ବ୍ୟବସ୍ଥା କରାଯାଉଅଛି ।

୮. ନିଗମ MAI Scheme ଜରିଆରେ ହସ୍ତଶିଳ୍ପର ରପ୍ତାନୀ ପାଇଁ ପଦକ୍ଷେପ ନେଉଛି । ୱେବସାଇଟ୍ ମାଧ୍ୟମରେ ଓଡ଼ିଶା ହସ୍ତଶିଳ୍ପ ସାମଗ୍ରୀର ବଜାର ସୃଷ୍ଟି କରିବା ନିମନ୍ତେ ବ୍ୟବସ୍ଥା କରାଯାଉଛି ।

### ଡ) ଓଡ଼ିଶା ଶିଳ୍ପ ଭିତ୍ତିଭୂମି ଉନ୍ନୟନ ନିଗମ (ଇଡ୍‌କୋ), ଭୁବନେଶ୍ୱର :

ରାଜ୍ୟରେ ନିରୂପିତ ସ୍ଥାନମାନଙ୍କରେ ଶିଳ୍ପାଞ୍ଚଳ ସୃଷ୍ଟି କରି ତହିଁରେ ଶୃଙ୍ଖଳିତ ଭାବରେ ଶିଳ୍ପ ବ୍ୟବସାୟ ଓ ବାଣିଜ୍ୟର ଦୃତ ଅଭିବୃଦ୍ଧି ଘଟାଇବା ଲକ୍ଷ୍ୟ ନେଇ ଓଡ଼ିଶା ଶିଳ୍ପ ଭିତ୍ତିଭୂମି ଉନ୍ନୟନ ନିଗମ ୧୯୮୧ ମସିହାଠାରୁ ପ୍ରତିଷ୍ଠା କରାଯାଇଛି । ଅଧୁନା ଏହି ନିଗମ ବିଭିନ୍ନ ପର୍ଯ୍ୟାୟରେ ପ୍ରତିଷ୍ଠା ହୋଇଥିବା ୮୬ଟି ଶିଳ୍ପାଞ୍ଚଳର ରକ୍ଷଣାବେକ୍ଷଣ ଓ ସୁପରିଚାଳନା ଦାୟିତ୍ୱ ଗ୍ରହଣ କରିଛି । ଏହାବ୍ୟତୀତ ମଧ୍ୟମ ଓ ବୃହତ୍ ଶିଳ୍ପାନୁଷ୍ଠାନକୁ ସେମାନଙ୍କର ଚାହିଦା ଅନୁଯାୟୀ ଜମି ଆହରଣ କରି ଯୋଗାଇଦେବା ଓ ଅନ୍ୟାନ୍ୟ ଭିତ୍ତିଭୂମି ଉନ୍ନୟନ କାର୍ଯ୍ୟକ୍ରମରେ ସହଯୋଗ କରିବା ମଧ୍ୟ ଏହି ନିଗମର ମୁଖ୍ୟ କାର୍ଯ୍ୟ । ଏହା ସହିତ ଉକ୍ତ ନିଗମ ରାଜ୍ୟ ସରକାର, କେନ୍ଦ୍ର ସରକାର ଓ ସେମାନଙ୍କଦ୍ୱାରା ପ୍ରାୟୋଜିତ ନିଗମ ବା ସଂଗଠନମାନଙ୍କଦ୍ୱାରା ନ୍ୟସ୍ତ କରାଯାଇଥିବା ବିଭିନ୍ନ ନିର୍ମାଣ କାର୍ଯ୍ୟ କରିଥାଏ । ରାଜ୍ୟରେ ଦୃଢ଼ ଶିଳ୍ପାୟନ ନିମନ୍ତେ ଉକ୍ତ ନିଗମ ପୁଞ୍ଜି ଲଗାଣକାରୀ ଓ ଉନ୍ନୟନକାରୀମାନଙ୍କୁ କାର୍ଯ୍ୟାନ୍ୱିତ କରିବା ପାଇଁ ଆବଶ୍ୟକ ମାର୍ଗ ଦର୍ଶନ ସେବା ଯୋଗାଇ ଦେଇଥାଏ । ଇଡ୍‌କୋ ରାଜ୍ୟ ସରକାରଙ୍କର ଏକମାତ୍ର ନିଗମ ଯେ କି ଆଇ.ଏସ୍.ଓ. ୯୦୦୧ ଓ ଆଇ.ଏସ୍.ଓ. ୧୪୦୦୧ ସାର୍ଟିଫିକେଟ ହାସଲକରି ସେବା ଓ ନିର୍ମାଣ ତଥା ଆଧୁନିକ ପରିବେଶ ସୁରକ୍ଷା ନିମନ୍ତେ ସୁନାମ ଅର୍ଜନ କରିଅଛି ।

### କ) ୨୦୦୭-୦୮ ବର୍ଷର କାର୍ଯ୍ୟକ୍ରମ

୨୦୦୭-୦୮ ଆର୍ଥିକ ବର୍ଷରେ ଯୋଜନା କାର୍ଯ୍ୟକ୍ରମରେ ବିଭିନ୍ନ ଶିଳ୍ପ ଭିତ୍ତିଭୂମି ଉନ୍ନୟନ କାର୍ଯ୍ୟରେ ୩୦.୯୦ କୋଟି ଟଙ୍କା ବିନିଯୋଗ ହେବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଥିଲା । ହାତକୁ ନିଆଯାଇଥିବା ବିଭିନ୍ନ ନିର୍ମାଣ କାର୍ଯ୍ୟକ୍ରମରେ ୪୫.୯୫ କୋଟି ଟଙ୍କାର କାର୍ଯ୍ୟ କରାଯିବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଥିଲା । ଏହାବ୍ୟତୀତ, ବିଭିନ୍ନ ବୃହତ୍ ଓ ମଧ୍ୟମ ଶିଳ୍ପାନୁଷ୍ଠାନମାନଙ୍କୁ ୨୦୦ କୋଟି ଟଙ୍କା ମୂଲ୍ୟର ଜମି ଅଧିଗ୍ରହଣ କରି ଯୋଗାଇ ଦେବା ପାଇଁ ପରିକଳ୍ପନା ହାତକୁ ନିଆଯାଇଥିଲା । ନିଗମର ଏହି ଆର୍ଥିକ ବର୍ଷରେ ମୋଟ କାରବାର ୨୭୬.୮୫ କୋଟି ଟଙ୍କା ହେବାର ଅଟକଳ କରାଯାଇଥିଲା ।

**ପ୍ରମୁଖ ଯୋଜନା କାର୍ଯ୍ୟକ୍ରମ**

- କଳିଙ୍ଗ ନଗର (ଡୁବୁରି), ଝାରସୁଗୁଡ଼ା ଏବଂ କେସିଙ୍ଗାଠାରେ ଶିଳ୍ପ ଅଭିବୃଦ୍ଧି କେନ୍ଦ୍ର ସ୍ଥାପନ ।
- ଖୋର୍ଦ୍ଧା ଓ ସୋମନାଥପୁରଠାରେ ଦୁଇଗୋଟି ସମନ୍ୱିତ ଭିତ୍ତିଭୂମି ଉନ୍ନୟନ କେନ୍ଦ୍ର ସ୍ଥାପନ ।
- ଖୋର୍ଦ୍ଧାଠାରେ ଖାଦ୍ୟପ୍ରକ୍ରିୟାକରଣ ପାର୍କ ସ୍ଥାପନ ।
- କେନ୍ଦ୍ରୀୟ ସହାୟତାରେ କୋଣାର୍କ ଓ ପୁରୀଠାରେ ଦୁଇ ଗୋଟି ଅର୍ବାନ ହାଟ (Urban Haat) ସ୍ଥାପନ ।
- ପୁରୀ ସ୍ୱତନ୍ତ୍ର ପର୍ଯ୍ୟଟନସ୍ଥଳୀ ଓ ଡୁବୁରୀ ଶିଳ୍ପାଞ୍ଚଳରେ ଭିତ୍ତିଭୂମି ଉନ୍ନୟନ ।

### ଖ) ୨୦୦୭-୦୮ ଆର୍ଥିକ ବର୍ଷର ସାଫଲ୍ୟ

**ଯୋଜନା କାର୍ଯ୍ୟକ୍ରମ**

- କଳିଙ୍ଗ ନଗର ଶିଳ୍ପ ଅଭିବୃଦ୍ଧି କେନ୍ଦ୍ରଠାରେ କ୍ଷୁଦ୍ର ଶିଳ୍ପ ସ୍ଥାପନ ନିମନ୍ତେ ପ୍ରଥମ ପର୍ଯ୍ୟାୟରେ ୧୦୦ ଏକର ଜମିର ଉନ୍ନୟନ ନିମନ୍ତେ ନକ୍ସା ପ୍ରସ୍ତୁତ କରାଯାଇଛି । ଏହି କାର୍ଯ୍ୟ ଖୁବ୍ ଶୀଘ୍ର ଆରମ୍ଭ ହୋଇ ଶେଷ ହେବ । ଆବଣ୍ଟିତ ହୋଇଥିବା ୫ ଗୋଟି ଶିଳ୍ପ ସଂସ୍ଥା ମଧ୍ୟରୁ ୩ ଗୋଟି ଲୌହ ପ୍ରକଳ୍ପ ସେମାନଙ୍କର ଉତ୍ପାଦନ ଆରମ୍ଭ କରିଛନ୍ତି । ଝାରସୁଗୁଡ଼ା ଅଭିବୃଦ୍ଧି କେନ୍ଦ୍ରଠାରେ ୨୦୬ ଏକର ଜମି ଉପରେ ୪୧୦ ଲକ୍ଷ ଟଙ୍କା ବ୍ୟୟ ଅଟକଳର ଉନ୍ନୟନ କାର୍ଯ୍ୟ ଚାଲୁରହିଛି । ଏଠାରେ ୧୩୫.୪୪ ଏକର ଜମିର

ଅଧିଗ୍ରହଣ କାର୍ଯ୍ୟ ଆଗେଇ ଚାଲିଛି । ଅଧିକ ୭୯.୭୧ ଏକର ସରକାରୀ ଜମି ଅଧିଗ୍ରହଣ ପ୍ରସ୍ତାବ ରାଜସ୍ୱ ଅଧିକାରୀଙ୍କଠାରେ ଉପସ୍ଥାପନ କରାଯାଇଛି ।

- ଖୋର୍ଦ୍ଧାଠାରେ ସମନ୍ୱିତ ଭିତ୍ତିଭୂମି ଉନ୍ନୟନ କେନ୍ଦ୍ର ସ୍ଥାପନ କାର୍ଯ୍ୟ ଯଥେଷ୍ଟ ଅଗ୍ରଗତି କରିଅଛି । ଏଠାରେ ୨୫ ଗୋଟି କ୍ଷୁଦ୍ର ଶିଳ୍ପକୁ ୨୫.୫୧୯ ଏକର ଜମି ଚଳିତ ବର୍ଷ ଆବଣ୍ଟନ କରାଯାଇଛି ।
- ଖୋର୍ଦ୍ଧା ଖାଦ୍ୟ ପ୍ରକ୍ରିୟାକରଣ ପାର୍କର ପ୍ରଶାସନିକ ଗୃହ ସହିତ ପରୀକ୍ଷାଗାର ଗୃହ ନିର୍ମାଣ ଶେଷ ହୋଇଛି । ଚଳିତ ବର୍ଷ ଏଠାରେ ୬ ଗୋଟି ଶିଳ୍ପ ସଂସ୍ଥାକୁ ୨୦.୩୬୮ ଏକର ଜମି ଆବଣ୍ଟନ କରାଯାଇଛି ।
- କେନ୍ଦ୍ରୀୟ ସହାୟତାରେ କୋଣାର୍କଠାରେ ଅର୍ବାନ ହାଟର କାର୍ଯ୍ୟ ଶେଷ ହୋଇ କାର୍ଯ୍ୟକ୍ଷମ ହୋଇଛି । ପୁରୀ ଅର୍ବାନ ହାଟର ଉନ୍ନୟନ କାର୍ଯ୍ୟ ଆଗେଇ ଚାଲିଛି ।
- ପୁରୀ ସ୍ୱତନ୍ତ୍ର ପର୍ଯ୍ୟଟନସ୍ଥଳୀର ସଂଯୋଗ ରାସ୍ତା ନିମନ୍ତେ ଜମି ଅଧିଗ୍ରହଣ କାର୍ଯ୍ୟ ଶେଷ ହୋଇ ନିର୍ମାଣ କାର୍ଯ୍ୟ ଚାଲୁ ରହିଛି ।

**ସରକାରୀ-ବେସରକାରୀ ମିଳିତ ସହଯୋଗରେ ଭିତ୍ତିଭୂମି ପ୍ରକଳ୍ପ ସ୍ଥାପନ**

- **ଷ୍ଟିଲ ଓ ମେଟାଲର୍ଜିକାଲ୍ କ୍ଲଷ୍ଟର, ଡୁବୁରୀ**

କଳିଙ୍ଗନଗର ଶିଳ୍ପାଞ୍ଚଳ ଅନ୍ତର୍ଗତ ଭିତ୍ତିଭୂମିଗୁଡ଼ିକର ଉନ୍ନୟନ/ଉନ୍ନତିକରଣ ନିମନ୍ତେ କେନ୍ଦ୍ର ସରକାରଙ୍କ ବାଣିଜ୍ୟ ଓ ଶିଳ୍ପ ମନ୍ତ୍ରଣାଳୟ Industrial Infrastructure Up-gradation Scheme (IIUS)ରେ ଏକ ପ୍ରକଳ୍ପ ଅନୁମୋଦନ କରିଛନ୍ତି । ଯାଜପୁର କ୍ଲଷ୍ଟର ଡେଭଲପ୍‌ମେଣ୍ଟ ଲିମିଟେଡ୍ (JCDL) କାର୍ଯ୍ୟକ୍ଷମ ହୋଇ ଶିଳ୍ପାଞ୍ଚଳରେ ଉନ୍ନୟନ କାର୍ଯ୍ୟ ହାତକୁ ନେଇଛି । କେନ୍ଦ୍ର ସରକାରଙ୍କ ୪୭ କୋଟି ଟଙ୍କା ଅଂଶଧନ ମଧ୍ୟରୁ ଅଦ୍ୟାବଧି ୩୧.୩୨ କୋଟି ଟଙ୍କା ପ୍ରକଳ୍ପକୁ ମିଳିଅଛି ।

- **ସ୍ୱତନ୍ତ୍ର ପର୍ଯ୍ୟଟନସ୍ଥଳୀ ପୁରୀ**

ଏହି ପ୍ରକଳ୍ପ ନିମନ୍ତେ ୯୩୪.୪୬ ଜମିର ଅଧିଗ୍ରହଣ କାର୍ଯ୍ୟ ଶେଷ ହୋଇଛି ଏବଂ ୬୯୪.୦୬୪ ଏକର ଜମିର ଅଧିଗ୍ରହଣ କାର୍ଯ୍ୟ ଚାଲୁରହିଛି । ଏହି ପ୍ରକଳ୍ପକୁ ସଂଯୋଗ ରାସ୍ତା, ଜଳ ଓ ବିଜୁଳିର ବ୍ୟବସ୍ଥା କରିବା ନିମନ୍ତେ ଇଡ୍‌କୋତରଫରୁ ପଦକ୍ଷେପ ନିଆଯାଇଛି । ରାଜ୍ୟ ସରକାରଙ୍କ ପର୍ଯ୍ୟଟନ ବିଭାଗକୁ ଏହି ପ୍ରକଳ୍ପର ଉନ୍ନୟନ ଓ ବଜାର ସୃଷ୍ଟି ନିମନ୍ତେ ଦାୟିତ୍ୱ ଦିଆଯାଇଛି ।

- **ଇନ୍‌ଫୋପାର୍କ**

ଚନ୍ଦକା ଶିଳ୍ପାଞ୍ଚଳରେ ୫୪ ଏକର ଜମି ଉପରେ ଏହି ପ୍ରକଳ୍ପ ସ୍ଥାପନ କରାଯାଉଛି । ଏହି ପ୍ରକଳ୍ପ ନିମନ୍ତେ DLF Ltd.କୁ ଖୋଲା ଟେଣ୍ଡର ମାଧ୍ୟମରେ ବଛାଯାଇ ନିଯୁକ୍ତି ପ୍ରଦାନ କରାଯାଇଛି । ଏହି ସଂସ୍ଥାକୁ ପ୍ରକଳ୍ପ ଉନ୍ନୟନ, ବଜାର ସୃଷ୍ଟି ଓ ଚଳାଇ ରଖିବା ନିମନ୍ତେ ଦାୟିତ୍ୱ ଦିଆଯାଇଛି । ଲିଜ୍-କମ୍-ଡେଭଲପ୍‌ମେଣ୍ଟ ଏଗ୍ରୀମେଣ୍ଟ ଗତ ତା.୧୩.୦୭.୨୦୦୭ ତାରିଖରେ ସ୍ୱାକ୍ଷରିତ ହୋଇଛି ।

- **ଇଣ୍ଟିଗ୍ରେଟେଡ୍ ଟେକ୍ସଟାଇଲ୍ ପାର୍କ (ଆପାରେଲ୍ ପାର୍କ)**

ଖୋର୍ଦ୍ଧା ନିକଟରେ ଏହି ପ୍ରକଳ୍ପ ସ୍ଥାପନ ନିମନ୍ତେ ସ୍ଥିର କରାଯାଇଥିଲା । ପ୍ରକଳ୍ପଟିକୁ ଭୁବନେଶ୍ୱରର ଓଡ଼ିଶା ଇଞ୍ଜିନିୟରିଂ କଲେଜ ନିକଟସ୍ଥ କୁର୍‌କି ମୌଜାକୁ ସ୍ଥାନାନ୍ତରିତ କରାଯାଇଛି ଓ ସେଠାରେ ୩୫ ଏକର ଜମି ଅଧିଗ୍ରହଣ କରାଯାଇ UCCIକୁ ଆବଣ୍ଟନ କରାଯାଇଛି । UCCI ତରଫରୁ ଏହି ପ୍ରକଳ୍ପ ପ୍ରତିଷ୍ଠା ନିମନ୍ତେ ଆଗ୍ରହ ପ୍ରକାଶ କରାଯାଇଛି ।

**ସ୍ୱତନ୍ତ୍ର ଆର୍ଥିକ ମଣ୍ଡଳ ବିକାଶ (SEZ Development)**

କେନ୍ଦ୍ରସରକାର ନିମ୍ନଲିଖିତ ସ୍ୱତନ୍ତ୍ର ଆର୍ଥିକ ମଣ୍ଡଳର ବିକାଶ ନିମନ୍ତେ ଅନୁମୋଦନ କରିଛନ୍ତି । ଏଥିପାଇଁ ଆବଶ୍ୟକୀୟ ପଦକ୍ଷେପ ଗ୍ରହଣ କରାଯାଉଅଛି ।

**ବିଧିବଦ୍ଧ ଅନୁମୋଦନ ପ୍ରଦାନ**

୧. ସୂଚନା ପ୍ରଯୁକ୍ତିବିଦ୍ୟା ଓ ସୂଚନା ପ୍ରଯୁକ୍ତି ବିଦ୍ୟା ସମ୍ବଳିତ ଶିକ୍ଷାନୁଷ୍ଠାନମାନଙ୍କ ପାଇଁ ଇନ୍‌ଫୋସିଟି, ଭୁବନେଶ୍ୱରଠାରେ Sector Specific SEZ.

୨. ମଞ୍ଚେଶ୍ୱର ଶିଳ୍ପାଞ୍ଚଳ, ଭୁବନେଶ୍ୱରରେ ସୂଚନା ପ୍ରଯୁକ୍ତି ବିଦ୍ୟା/ସୂଚନା ପ୍ରଯୁକ୍ତି ବିଦ୍ୟା ସମ୍ବଳିତ/ବି.ପି.ଓ. ଶିକ୍ଷାନୁଷ୍ଠାନମାନଙ୍କ ପାଇଁ Sector Specific SEZ.

୩. ଗୌଡ଼କାଶିପୁର, ଭୁବନେଶ୍ୱରରେ ସୂଚନା ପ୍ରଯୁକ୍ତି ବିଦ୍ୟା/ସୂଚନା ପ୍ରଯୁକ୍ତି ବିଦ୍ୟା ସମ୍ବଳିତ/ବି.ପି.ଓ. ଶିକ୍ଷାନୁଷ୍ଠାନମାନଙ୍କ ପାଇଁ ଏକ Knowledge Park SEZ.

**ନୀତିଗତ ଅନୁମୋଦନ**

ମହାକାଳପଡ଼ା ତହସିଲ ଅନ୍ତର୍ଗତ ପାରାଦୀପ ନିକଟରେ ୨୭୦୦ ଏକର ଜମି ଉପରେ ଏକ Multi Product SEZ

➢ **ଆଇଟି ଓ କର୍ପୋରେଟ୍ ଟାୱାର, ଭୁବନେଶ୍ୱର**

କର୍ପୋରେଟ ଅଫିସ୍ ଓ ସୂଚନା ପ୍ରଯୁକ୍ତି ବିଦ୍ୟା ଶିକ୍ଷାନୁଷ୍ଠାନ ନିମନ୍ତେ ଭୁବନେଶ୍ୱର ଫର୍‌ଚ୍ୟୁନ୍‌ଟାୱାର ସନ୍ନିକଟ୍ ୫.୪୭ ଏକର ଜମି ଉପରେ ଅତ୍ୟାଧୁନିକ କୌଶଳରେ ଏକ ବହୁତଳ ବିଶିଷ୍ଟ ପ୍ରାସାଦ ପ୍ରାୟ ୧୦୦ କୋଟି ଟଙ୍କା ବ୍ୟୟଅଟକଳରେ ନିର୍ମାଣ କରାଯିବ । ଏହି ପ୍ରକଳ୍ପଟି ସରକାରୀ ଓ ବେସରକାରୀ ମିଳିତ ଉଦ୍ୟୋଗ (PPP Mode)ରେ କାର୍ଯ୍ୟକାରୀ କରାଯିବ । IL&FS ସଂସ୍ଥାକୁ ପ୍ରୋଜେକ୍ଟ ଡେଭଲପ୍‌ମେଣ୍ଟ ଓ ବିଡ଼ିଂ ପ୍ରସେସ୍ ଦାୟିତ୍ୱ ଅର୍ପଣ କରାଯାଇଛି ।

➢ **ହରିଦାସପୁର-ପାରାଦ୍ୱୀପ ରେଳପଥ**

୭୮ କି.ମି. ଦୀର୍ଘ ଏହି ରେଳପଥ ମିଳିତ ଭାବେ ରେଳ ବିକାଶ ନିଗମ ଲିଃ ଇଡ୍‌କୋ, ପାରାଦୀପ ପୋର୍ଟଟ୍ରଷ୍ଟ ଓ ବ୍ୟବହାରକାରୀ ଶିଳ୍ପସଂସ୍ଥାମାନଙ୍କଦ୍ୱାରା ଗଠିତ ମେସର୍ସ ହରିଦାସପୁର ପାରାଦୀପ ରେଳ କମ୍ପାନୀ ଲିଃ. SPVଦ୍ୱାରା ବିକାଶ କରାଯିବ । ଏହି କମ୍ପାନୀରେ ଇଡ୍‌କୋ ୧.୮୦ କୋଟି ଟଙ୍କାର ଅଂଶଧନ ବିନିଯୋଗ କରୁଛି । ଅଂଶୀଦାରମାନଙ୍କ ଚୁକ୍ତି ୧୧ ଅକ୍ଟୋବର ୨୦୦୬ ଦିନ ସ୍ୱାକ୍ଷରିତ ହୋଇଛି । ଇଡ୍‌କୋ ଉପରୋକ୍ତ କମ୍ପାନୀରେ ୯୦ ଲକ୍ଷ ଟଙ୍କା ଜମା କରିସାରିଛି ।

➢ **ଆଇଟି ଓ କମର୍‌ସିଆଲ୍ କମ୍ପ୍ଲେକ୍ସ, ରାଉରକେଲା**

ରାଉରକେଲା ସିଭିଲ୍ ଟାଉନ୍‌ସିପରେ ୩.୪୭ ଏକର ଜମି ଉପରେ ୩.୫ ଲକ୍ଷ ବର୍ଗଫୁଟ ବିଶିଷ୍ଟ ଏକ କମରସିଆଲ କମ୍ପ୍ଲେକ୍ସ ଇଡ୍‌କୋଦ୍ୱାରା ନିର୍ମାଣ କରାଯାଉଛି । ସୂଚନା ପ୍ରଯୁକ୍ତି ବିଦ୍ୟା ଶିକ୍ଷାନୁଷ୍ଠାନ, କର୍ପୋରେଟ୍ ଅଫିସ୍ ଇତ୍ୟାଦିକୁ ଉଚ୍ଚମାନର ସ୍ଥାନ (quality built up space) ଯୋଗାଇଦେବା ଏହାର ଉଦ୍ଦେଶ୍ୟ । ପ୍ରକଳ୍ପ ବିକାଶକାରୀ (Project Developer)ଙ୍କ ଚୟନ ନିମନ୍ତେ ପଦକ୍ଷେପ ନିଆଯାଉଅଛି ।

➢ **ଆଇଟି ଓ କମରସିଆଲ୍ କମ୍ପ୍ଲେକ୍ସ, ବ୍ରହ୍ମପୁର**

ବ୍ରହ୍ମପୁର ସନ୍ନିକଟ ଆମ୍ବପୁଆଠାରେ ୧୦.୦୫୬ ଏକର ଜମି ଉପରେ ୩.୫ ଲକ୍ଷ ବର୍ଗଫୁଟ ସ୍ଥାନ ବିଶିଷ୍ଟ ଏକ କମରସିଆଲ୍ କମ୍ପ୍ଲେକ୍ସ ସ୍ଥାପନ ନିମନ୍ତେ ଯୋଜନା କରାଯାଇଛି । ସୂଚନା ଓ ପ୍ରଯୁକ୍ତି ବିଦ୍ୟା ଶିକ୍ଷାନୁଷ୍ଠାନ, କର୍ପୋରେଟ୍ ଅଫିସ୍ ଇତ୍ୟାଦିକୁ ଉଚ୍ଚମାନର ସ୍ଥାନ ଯୋଗାଇଦେବାର ଲକ୍ଷ୍ୟ ରଖାଯାଇଛି । ପ୍ରକଳ୍ପ ବିକାଶକାରୀ (Project Developer)ଙ୍କ ଚୟନ ପ୍ରକ୍ରିୟା ରାଜ୍ୟ ସରକାରଙ୍କ ନଗର ଉନ୍ନୟନ ବିଭାଗଦ୍ୱାରା ଜମି ବ୍ୟବହାର ପରିବର୍ତ୍ତନ ଅନୁମୋଦନ ପରେ ଆରମ୍ଭ କରାଯିବ ।

➢ **ଇଣ୍ଟରନେସନାଲ୍ କନଭେନ୍‌ସନ୍ ସେଣ୍ଟର୍, ଭୁବନେଶ୍ୱର**

ରାଜ୍ୟ ପର୍ଯ୍ୟଟନ ଅଂଶବିଶେଷ ବୈଠକ, ପ୍ରୋତ୍ସାହନ, ଆଲୋଚନା ସଭା ଓ ପ୍ରଦର୍ଶନକୁ ଅଧିକତର ଗୁରୁତ୍ୱ ପ୍ରଦାନ କରାଯିବା ଏହି ପ୍ରକଳ୍ପର ଲକ୍ଷ୍ୟ । ଏହି ପ୍ରକଳ୍ପ ସରକାରୀ ଓ ବେସରକାରୀ ମିଳିତ ଉଦ୍ୟୋଗ (PPP Mode)ରେ ବିକାଶ କରାଯିବ । IL & FS

ସଂସ୍ଥା ପ୍ରକଳ୍ପ ବିକାଶ କାର୍ଯ୍ୟକ୍ରମରେ ଇଡ୍‌କୋକୁ ସହାୟତା ପ୍ରଦାନ କରୁଛନ୍ତି । ଏଥିନିମନ୍ତେ ସାଧାରଣ ପ୍ରଶାସନ ବିଭାଗ ରସୁଲଗଡ଼ଠାରେ ୨୯.୧୮ ଏକର ଜମି ମଞ୍ଜୁର କରିଛନ୍ତି ।

➢ **ଜୈବିକ ଔଷଧୀୟ ପ୍ରଯୁକ୍ତି ବିଦ୍ୟାସ୍ଥଳୀ** (Bio-Pharma IT Park)

ଜୈବିକ ପ୍ରଯୁକ୍ତି ଏବଂ ଜୈବିକ ଔଷଧୀୟ ବିଦ୍ୟା କ୍ଷେତ୍ରରେ ଆମ ରାଜ୍ୟ ଗବେଷଣା, ବିକାଶ ଓ ଉଦ୍ଭାବନ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ସ୍ଥାନର ମାନ୍ୟତା ହାସଲ ନିମନ୍ତେ ଏପରି ପ୍ରକଳ୍ପ ପାଇଁ ଭୁବନେଶ୍ୱର ସନ୍ନିକଟ ଅନ୍ଧାରୁଆଠାରେ ୫୩.୨୨୯ ଏକର ଜମି ଇଡ୍‌କୋକୁ ହସ୍ତାନ୍ତର କରାଯାଉଛି । Draft RFQ ବିଜ୍ଞାନ ଓ କାରିଗରୀ ବିଭାଗର ଅନୁମୋଦନ ଲାଭ କରିଥିବା ତା.୫.୪.୨୦୦୭ ତାରିଖରେ ପ୍ରକାଶ ପାଇଛି ।

➢ **ସାଧାରଣ ଶୀତଳ ଭଣ୍ଡାର**

ଏହି ପ୍ରକଳ୍ପ ମିଳିତ ଭାବରେ Sea Food Exporters Association of India, ରାଜ୍ୟ ଶାଖାଙ୍କଦ୍ୱାରା କାର୍ଯ୍ୟକାରୀ କରାଯିବା ନିମନ୍ତେ ଯୋଜନା କରାଯାଇଛି । M/s Eastern Cold Chains Ltd. SPVଦ୍ୱାରା କାର୍ଯ୍ୟକାରୀ ହେବାକୁ ଥିବା ଏହି ପ୍ରକଳ୍ପରେ ୫୯୫ ଲକ୍ଷ ଟଙ୍କା ବ୍ୟୟ କରାଯିବ । ଖୋର୍ଦ୍ଧା ଖାଦ୍ୟ ପ୍ରକ୍ରିୟାକରଣ ପାର୍କରେ ୩ ଏକର ଜମି ଯୋଗାଇ ଦେଇ ଇଡ୍‌କୋ ସମ୍ପୃକ୍ତ SPVରେ ଅଂଶୀଦାର ହେବ । ଏହି ପ୍ରକଳ୍ପକୁ ଆର୍ଥିକ ସାହାଯ୍ୟ ଦେବା ନିମନ୍ତେ ରାଜ୍ୟ ସରକାରଙ୍କ ତରଫରୁ MPEDAକୁ ଅନୁରୋଧ କରାଯାଇଛି ।

➢ **ପେଟ୍ରୋଲିୟମ କେମିକାଲ୍ ଓ ପେଟ୍ରୋକେମିକାଲ୍ ଇନ୍‌ଭେଷ୍ଟମେଣ୍ଟ ରିଜିୟନ୍** (PCPIR)

ପାରାଦୀପ ଅଞ୍ଚଳରେ ପେଟ୍ରୋଲିୟମ ଓ ପେଟ୍ରୋକେମିକାଲ୍ ଶିଳ୍ପ ଉନ୍ନୟନ ନିମନ୍ତେ ପାରାଦୀପ ଇନ୍‌ଭେଷ୍ଟମେଣ୍ଟ ରିଜିୟନ୍ ଡେଭଲପ୍‌ମେଣ୍ଟ ଲିଃ ନାମରେ ଏକ କମ୍ପାନୀ ଗଢ଼ାଯାଇଛି । ଭାରତୀୟ ତୈଳ ନିଗମ ଓ ପାରାଦୀପ ପୋର୍ଟ ଟ୍ରଷ୍ଟଙ୍କୁ ଏହି କମ୍ପାନୀରେ ଯୋଗଦେବା ନିମନ୍ତେ ଅନୁରୋଧ କରାଯାଇଛି । IL & ES ସଂସ୍ଥାକୁ ପ୍ରୋଜେକ୍ଟ ରିପୋର୍ଟ ପ୍ରସ୍ତୁତ କରିବା ନିମନ୍ତେ ଦାୟିତ୍ୱ ଦିଆଯାଇଛି । କେନ୍ଦ୍ର ସରକାରଙ୍କ ପ୍ରକଳ୍ପଟିକୁ ଅନୁମୋଦନ ପ୍ରଦାନ କରିବା ନିମନ୍ତେ ଗତ ଡିସେମ୍ବର ମାସରେ (୨୦୦୭) ଅନୁରୋଧ କରାଯାଇଛି ।

**ଜମି ଅଧିଗ୍ରହଣ**

ସରକାରୀ ଓ ବେସରକାରୀ ଜମିକୁ ଶିଳ୍ପ ସଂସ୍ଥା ପାଇଁ ଚିହ୍ନଟ କରି ଅଧିଗ୍ରହଣ କରିବା ପାଇଁ ଇଡ୍‌କୋକୁ ସରକାର Nodal Agency ଭାବେ ଘୋଷଣା କରିଛନ୍ତି । ସେହି ଜମି ଶିଳ୍ପ, ବାଣିଜ୍ୟ ଓ ଭିତ୍ତିଭୂମି ଉନ୍ନୟନ ପାଇଁ ହସ୍ତାନ୍ତର କରାଯାଇଥାଏ । ଚଳିତ ବର୍ଷ ଡିସେମ୍ବର ମାସ ଶେଷ ସୁଦ୍ଧା ୧୯୨୫.୦୩୩ ଏକର ଜମି ୨୬ ଗୋଟି ଶିଳ୍ପ ସଂସ୍ଥାକୁ ଯୋଗାଇ ଦିଆଯାଇଛି । ଯେଉଁ କେତେକ ବୃହତ୍ ଶିଳ୍ପାନୁଷ୍ଠାନମାନଙ୍କୁ ୨୦୦୭-୦୮ ବର୍ଷରେ ଜମି ଆବଣ୍ଟନ କରାଯାଇଛି, ତାହାର ତାଲିକା ନିମ୍ନରେ ପ୍ରଦାନ କରାଗଲା ।

| କ୍ର. ସଂ. | ପ୍ରକଳ୍ପର ନାମ | ଅବସ୍ଥିତି | ଆବଣ୍ଟିତ ଜମିର ପରିମାଣ |
|---|---|---|---|
| ୧. | ଜିନ୍ଦାଲ ଷ୍ଟିଲ ଏଣ୍ଡ୍ ପାୱାର | କେରଜଙ୍ଗ, କେଉଁଝର | ୯୬.୪୯ |
| ୨. | ପୋସ୍କୋ ଇଣ୍ଡିଆ ଲିଃ | ପାରାଦୀପ, ଜଗତସିଂହପୁର | ୨୦୦.୫୫ |
| ୩. | ଏସାର ESSAR ଷ୍ଟିଲ | ପାରାଦୀପ, ଜଗତସିଂହପୁର | ୭୪.୨୦ |
| ୪. | ଦିନବନ୍ଧୁ ଷ୍ଟିଲ ଲିଃ | କଳିଙ୍ଗ ନଗର (ଡୁବୁରୀ), ଯାଜପୁର | ୭୦.୦୦ |
| ୫. | ବ୍ରାହ୍ମଣୀ ରିଭର ପେଲେଟସ୍ | କଳିଙ୍ଗ ନଗର (ଡୁବୁରୀ), ଯାଜପୁର | ୯୦.୦୦ |
| ୬. | ବେଦାନ୍ତ ଆଲୁମିନା ଲିଃ | ଲାଞ୍ଜିଗଡ଼, କଳାହାଣ୍ଡି | ୫୬୨.୧୭ |

| | | | |
|---|---|---|---|
| ୭. | ଷ୍ଟେରଲାଇଟ୍ ଏନର୍ଜି ଲିଃ | କୁରେବାଗ, ଝାରସୁଗୁଡ଼ା | ୧୭୨.୬୯ |
| ୮. | ହିଣ୍ଡାଲ୍‌କୋ ଇଣ୍ଡଷ୍ଟ୍ରିଜ୍ ଲିଃ | କଂସାରୀଗଡ଼ା, କୋରାପୁଟ | ୪୪୩.୫୮ |

**ନିର୍ମାଣ କାର୍ଯ୍ୟ**

ଏହି କାର୍ଯ୍ୟକ୍ରମରେ ନିମ୍ନଲିଖିତ ପ୍ରମୁଖ ପ୍ରକଳ୍ପଗୁଡ଼ିକ ନିର୍ମାଣାଧୀନ ରହିଛି :

୧. ଓଡ଼ିଶୀ ଗବେଷଣା କେନ୍ଦ୍ର ଓ ହରେକୃଷ୍ଣ ମହତାବ ପାଠାଗାର କାର୍ଯ୍ୟ (ଭୁବନେଶ୍ୱର)

୨. ଉତ୍ତର ଓ ଓଡ଼ିଶା ବିଶ୍ୱବିଦ୍ୟାଳୟ କାର୍ଯ୍ୟ (ବାଲେଶ୍ୱର)

୩. କଲେଜ ଅଫ୍ ଇଞ୍ଜିନିୟରିଂ ଆଣ୍ଡ୍ ଟେକ୍‌ନୋଲୋଜି କାର୍ଯ୍ୟ (ଭୁବନେଶ୍ୱର)

୪. ବିଜୁ ପଟ୍ଟନାୟକ ବୈଷୟିକ ବିଶ୍ୱବିଦ୍ୟାଳୟ କାର୍ଯ୍ୟ (ରାଉରକେଲା)

୫. କେସିଡିଏଲ ରାସ୍ତା ଓ ଦଳ ଯୋଗାଣ କାର୍ଯ୍ୟ (ଡୁବୁରୀ)

୬. ସାଧାରଣ ପ୍ରଶାସନ ବିଭାଗର ଗୃହ ନିର୍ମାଣ କାର୍ଯ୍ୟ (ଭୁବନେଶ୍ୱର)

୭. ଓଡ଼ିଶା କମ୍ପ୍ଲେକ୍ସ (ନଭିମୁମ୍ବାଇ)

୮. ନଭୋଦୟ ବିଦ୍ୟାଳୟ ସମିତି ସ୍କୁଲଗୃହ

୯. ଆଇ.ଜି.ଆଇ.ଟି., ସରାଙ୍ଗ

୧୦. କମ୍ପାନୀ ଆଫେୟାର୍ସ ମନ୍ତ୍ରଣାଳୟର କାର୍ଯ୍ୟାଳୟ ଗୃହ ନିର୍ମାଣ କାର୍ଯ୍ୟ (କଟକ)

୧୧. ଓଡ଼ିଶା ଖଣି ନିଗମର ବିଦ୍ୟୁତ୍‌କରଣ କାର୍ଯ୍ୟ (ଦୈତାରୀ)

୧୨. ସ୍ୱତନ୍ତ୍ର ପର୍ଯ୍ୟଟନସ୍ଥଳୀ ବାହ୍ୟ ଭିତ୍ତିଭୂମି କାର୍ଯ୍ୟ (ପୁରୀ)

୧୩. ରବୀନ୍ଦ୍ର ମଣ୍ଡପ ଓ ଭଞ୍ଜକଳା ମଣ୍ଡପ ଉନ୍ନତିକରଣ କାର୍ଯ୍ୟ (ଭୁବନେଶ୍ୱର)

୧୪. ଓଡ଼ିଶା ମାଇନିଙ୍ଗ୍ ଇଞ୍ଜିନିୟରିଂ ସ୍କୁଲ (କେଉଁଝର)

୧୫. ଓଡ଼ିଶା ଉଚ୍ଚ ନ୍ୟାୟାଳୟ ଭବନ (କଟକ)

**ବାର୍ଷିକ କାରବାର**

୨୦୦୬-୦୭ ଆର୍ଥିକ ବର୍ଷରେ ଏହି ନିଗମ ୪୭୨.୭୩ କୋଟି ଟଙ୍କାର କାରବାର (Turnover) କରିଥିଲା । ୨୦୦୭-୦୮ ଆର୍ଥିକ ବର୍ଷରେ ନିଗମର ମୋଟ କାରବାର ଧାର୍ଯ୍ୟଲକ୍ଷ୍ୟ ଅନୁଯାୟୀ ୨୭୬.୮୫ କୋଟି ଟଙ୍କା ଥିବାବେଳେ ଡିସେମ୍ବର ମାସ ଶେଷ ସୁଦ୍ଧା ତାହା ୩୮୪.୧୩ କୋଟି ଟଙ୍କା (Provisional) ହୋଇଥିବାର ଜଣାଯାଇଛି । ଭୂ-ଅର୍ଜନ କାର୍ଯ୍ୟରେ ଅଧିକ ସଫଳତା ହାସଲ କରାଯାଇଥିବାରୁ ଅଧିକ କାରବାର ସମ୍ଭବ ହୋଇପାରିଛି ।

**ଚ) ଓଡ଼ିଶା ଶିଳ୍ପୋଦ୍ୟୋଗୀ ଓ ପୁଞ୍ଜି ବିନିଯୋଗ ନିଗମ (ଇପିକାଲ) ଭୁବନେଶ୍ୱର**

ବୃହତ୍ତ ଓ ମଧ୍ୟମ ଶିଳ୍ପର ବିକାଶ ତଥା ରାଜ୍ୟର ଦ୍ରୁତ ଶିଳ୍ପ ବିକାଶର ଲକ୍ଷ୍ୟ ରଖି ୧୯୭୩ ମସିହା ଏପ୍ରିଲ ୧୨ ତାରିଖରେ ଇପିକଲ (ଓଡ଼ିଶା ଶିଳ୍ପୋଦ୍ୟୋଗୀ ଓ ପୁଞ୍ଜି ବିନିଯୋଗ ନିଗମ) ସ୍ଥାପିତ ହୋଇଥିଲା ।

ଚଳିତ ୨୦୦୭-୦୮ରେ ଇପିକଲ ଋଣ ବାବଦରେ ମୂଳଧନ ଓ ସୁଧ ମିଶାଇ ୧୩୦୦.୦୦ ଲକ୍ଷ ଟଙ୍କା ଆଦାୟ କରିଛି ।

ଉପରୋକ୍ତ ସମୟ ମଧ୍ୟରେ ଅନଗ୍ରସର ଅଞ୍ଚଳରେ ଶିଳ୍ପର ବିକାଶ ନିମନ୍ତେ ଇପିକଲ ବିଶେଷ ଭୂମିକା ଗ୍ରହଣ କରିଛି । ବର୍ତ୍ତମାନ ଓଡ଼ିଶା Steel, Sponge Iron, Cement, Power & Alumina/Aluminium ଉତ୍ପାଦନରେ ଏକ ଉଦୀୟମାନ ରାଜ୍ୟରେ ପରିଗଣିତ ହେବାକୁ ଯାଉଛି । ଏହି ଶିଳ୍ପଗୁଡ଼ିକ ଶ୍ରମ ଭିତ୍ତିକ ତଥା ସ୍ଥାନୀୟ ଖଣିଜ ସମ୍ପଦର ସଦୁପଯୋଗକାରୀ ।

ଇପିକଲ ରାଜ୍ୟର State Level Nodal Agency (SLNA) ଓ ପୁଞ୍ଜି ନିବେଶକାରୀମାନଙ୍କର ଏକମାତ୍ର ସଂଯୋଗକାରୀ ହିସାବରେ ଉଚ୍ଚ କ୍ଷମତାଧାରୀ ଅନୁମୋଦନ ଅଥରଟୀ (HLCA) ଓ ରାଜ୍ୟସ୍ତରୀୟ Single Window ଅଥରଟୀ (SLSWCA) ନିକଟରେ ସେମାନଙ୍କର ପ୍ରସ୍ତାବ ଉପସ୍ଥାପନ କରେ । ଇପିକଲ ପୁଞ୍ଜି ନିବେଶକାରୀଙ୍କଠାରୁ (CAF) ଗ୍ରହଣ କରେ ଓ ସମ୍ପର୍କିତ ବିଭାଗକୁ ପଠାଇ ତାହାର ଅନୁମତି ତଥା ମତାମତ ସଂଗ୍ରହ କରେ । Projectର ସବୁ ଆନୁଷଙ୍ଗିକ ଆବଶ୍ୟକତାକୁ ପରୀକ୍ଷା ନିରୀକ୍ଷା କରି HLCA ଓ SLSWCA ନିକଟରେ ଉପସ୍ଥାପନ କରେ । ଏହା ଉପରୋକ୍ତ ଅଥରଟୀର ଅନୁମୋଦନ ପରେ ଆବଶ୍ୟକସ୍ଥଳେ MoU ସ୍ୱାକ୍ଷରିତ ହୁଏ । ଉପରୋକ୍ତ ସମୟ ମଧ୍ୟରେ SLSWCAଦ୍ୱାରା ୩୬ଟି ପ୍ରକଳ୍ପକୁ ଅନୁମୋଦନ ମିଳିଛି । ସ୍ଥାପନ କାର୍ଯ୍ୟରେ କୌଣସି ବାଧା ଉପୁଜିଲେ ଇପିକଲ Projectଟିକୁ ଆବଶ୍ୟକସ୍ଥଳେ ସହାୟତା କରେ ।

ବର୍ତ୍ତମାନ ଅନେକଗୁଡ଼ିଏ ବୃହତ ପ୍ରକଳ୍ପ ନିର୍ମାଣାଧୀନ ଅଛି । ବିଗତ ୫ ବର୍ଷ ମଧ୍ୟରେ ମୁଖ୍ୟତଃ ଷ୍ଟିଲ୍, ଆଲୁମିନା, ସିମେଣ୍ଟ ଓ ବିଦ୍ୟୁତ୍ ଶକ୍ତି ଶିଳ୍ପ ପ୍ରତିଷ୍ଠା ନିମନ୍ତେ ୬୭ଟି MoU ସ୍ୱାକ୍ଷର କରାଯାଇଛି । ୨୦୦୭-୦୮ ମସିହାରେ ଇପିକଲର SLNA ୪୨ଟି Combined Application Form (CAF) ଗ୍ରହଣ କରିଛି । ଏହି ପ୍ରକଳ୍ପଗୁଡ଼ିକରେ ୮୩୩୫୪.୭୬ କୋଟି ଟଙ୍କା ବିନିଯୋଗର ପ୍ରସ୍ତାବ ଅଛି ।

ଇପିକଲ ବର୍ତ୍ତମାନ Combined Application Form (CAF) ଅନୁମୋଦନ ପ୍ରକ୍ରିୟାର ଗତିବିଧି ଅନୁଧ୍ୟାନ ତଥା ତ୍ୱରାନ୍ୱିତ କରିବା ନିମନ୍ତେ କମ୍ପ୍ୟୁଟରୀକରଣ ଜରିଆରେ ନୂତନ ପ୍ରକଳ୍ପ ଅନୁଧ୍ୟାନ ତଥା ସୂଚନା ବ୍ୟବସ୍ଥା (Project Monitoring Information System) ପ୍ରଚଳନ କରିବାକୁ ଯାଉଛି । ଏହି ବ୍ୟବସ୍ଥାଦ୍ୱାରା ପୃଥିବୀର ଯେକୌଣସି ସ୍ଥାନରୁ ଶିଳ୍ପୋଦ୍ୟୋଗୀ ଓଡ଼ିଶାରେ ଶିଳ୍ପ ସ୍ଥାପନ ନିମନ୍ତେ ଇଣ୍ଟରନେଟ୍ ଜରିଆରେ ଆବେଦନ କରିପାରିବେ ତଥା ସେ ସମ୍ପର୍କିତ ତଥ୍ୟ ପାଇପାରିବେ ।

ସରକାରଙ୍କର ଓଡ଼ିଶାକୁ ବିଶ୍ୱ ଶିଳ୍ପୋଦ୍ୟୋଗୀମାନଙ୍କ ନିକଟରେ ପହଞ୍ଚାଇବା ଲକ୍ଷ୍ୟରେ ଗଠିତ Team Orissaର ସଚିବାଳୟ ହିସାବରେ ମଧ୍ୟ କାର୍ଯ୍ୟ କରୁଛି । ଇପିକଲ ବର୍ତ୍ତମାନ ରାଜ୍ୟ ସରକାରଙ୍କର ଶିଳ୍ପୋଦ୍ୟୋଗ ଅଭିବୃଦ୍ଧି ନିମନ୍ତେ ଆବଶ୍ୟକୀୟ ଦାୟିତ୍ୱ ତୁଲାଇ ପାରୁଛି । ଦେଶ ମଧ୍ୟରେ ଓ ବିଦେଶରେ ଶିଳ୍ପ ପ୍ରତିଷ୍ଠା ପାଇଁ ଓଡ଼ିଶାକୁ ଉପଯୁକ୍ତ ସ୍ଥାନ ହିସାବରେ ଉପସ୍ଥାପନ କରିପାରିଛି ।

ଏଥିନିମନ୍ତେ ୨୦୦୭-୦୮ ଆର୍ଥିକ ବର୍ଷରେ ଏହା ନିମ୍ନୋକ୍ତ ଉଦ୍ୟମ କରିଛି ।

କ) ବିଦେଶ କାର୍ଯ୍ୟକ୍ରମ

ଜର୍ମାନୀଠାରେ Hannover Messe 2007ରେ ଇଞ୍ଜିନିୟରିଂ ଆନ୍ତର୍ଜାତିକ ମେଳାରେ ଓଡ଼ିଶାର ଗୁରୁତ୍ୱ ଉପସ୍ଥାପନ ।

ଖ) ଦେଶ ମଧ୍ୟରେ କାର୍ଯ୍ୟକ୍ରମ

୧) ହରିଆନା ଓ ପଞ୍ଜାବରେ ଇସ୍ପାତ କ୍ଷେତ୍ରରେ ଆନୁଷଙ୍ଗିକ ଶିଳ୍ପ ସ୍ଥାପନ ନିମନ୍ତେ ଓଡ଼ିଶାରେ ଥିବା ସୁବିଧା ଓ ସୁଯୋଗ ସମ୍ପର୍କିତ କାର୍ଯ୍ୟକ୍ରମ ।

୨) ତାମିଲନାଡୁର ଏକକ ଗବାକ୍ଷ ଅନୁମୋଦନ ପ୍ରକ୍ରିୟା (Single Window System) ଅନୁଧ୍ୟାନ ନିମନ୍ତେ Team Orissa ଦଳର ଚେନ୍ନାଇ ଗସ୍ତ ।

୩) ରାଜସ୍ଥାନର ଜୟପୁରଠାରେ ଆଲୁମିନିୟମ ଶିଳ୍ପ ସମ୍ପର୍କିତ Alucast-2007ରେ ଯୋଗଦାନ ଓ ଆଲୁମିନିୟମ ଆନୁଷଙ୍ଗିକ ଶିଳ୍ପ ପ୍ରତିଷ୍ଠା ନିମନ୍ତେ ଓଡ଼ିଶାର ଗୁରୁତ୍ୱ ଉପସ୍ଥାପନ ।

୪) ଓଡ଼ିଶାରେ ଦକ୍ଷିଣ ଆଫ୍ରିକା ସମ୍ପର୍କରେ ତଥ୍ୟ ପ୍ରଦାନ ନିମନ୍ତେ Orissa State Productivity Council ସହ ମିଳିତ ଉଦ୍ୟମରେ South Africa Help Desk ପ୍ରତିଷ୍ଠା ।

୫) ପରିମଳ ଉନ୍ନୟନ ବ୍ୟବସ୍ଥା (Clean Development Mechanism) ଓ ନିର୍ଦ୍ଧାରିତ ଶିଳ୍ପ ନୀତି (Industrial Policy Resolution) ଉପରେ କର୍ମଶାଳାର ଆୟୋଜନ ।

୬) ଭୁବନେଶ୍ୱରଠାରେ Confederation of Indian Industry (CII) ପ୍ରାୟୋଜିତ Enterprise Orissa-2007, ଦିଲ୍ଲୀଠାରେ IITF-2007, India Engineering Technology Fair-2007, Indian Engineering Meet & Exhibition (IEME)ରେ ଯୋଗଦାନ ।

୭) ଓଡ଼ିଶା ଓ ଜାପାନ ମଧ୍ୟରେ ଶିଳ୍ପ ସମ୍ପର୍କିତ ତଥ୍ୟ, ପୁଞ୍ଜି ଲଗାଣର ସୁବିଧା ଲବ୍ଧ କରିବା ନିମନ୍ତେ ଜାପାନ ବାହ୍ୟ ବାଣିଜ୍ୟ ସଂସ୍ଥା (Japan External Trade Organisation-JETRO) ସହ ବୁଝାମଣାପତ୍ର (MoU) ସ୍ୱାକ୍ଷର ।

୮) ବିଭିନ୍ନ କ୍ଷେତ୍ରରେ ଓଡ଼ିଶାରେ ଉପଲବ୍ଧ ସୁବିଧା ସୁଯୋଗ ଅନୁଧ୍ୟାନ କରି ବିବରଣୀ (Report) କରିବା ନିମନ୍ତେ ପ୍ରକ୍ରିୟା ଆରମ୍ଭ । ଏଥିନିମନ୍ତେ UNIDOର ସହାୟତା ଗ୍ରହଣ କରି ୬ଟି କ୍ଷେତ୍ର ଉପରେ ବିବରଣୀ ପ୍ରସ୍ତୁତ କରାଯାଇଛି ଏବଂ ଏହି ଦିଗରେ ଉଦ୍ୟମ ଅବ୍ୟାହତ ରହିଛି ।

**ଛ) ଓଡ଼ିଶା ରାଜ୍ୟ ଶିଳ୍ପ ଉନ୍ନୟନ ନିଗମ ଲିଃ (ଇଡ୍‌କଲ) ଭୁବନେଶ୍ୱର**

ଓଡ଼ିଶା ରାଜ୍ୟ ଶିଳ୍ପ ଉନ୍ନୟନ ନିଗମ ଲିଃ (ଇଡ୍‌କଲ) ରାଜ୍ୟରେ ମିଳୁଥିବା କଞ୍ଚାମାଲ ବିନିଯୋଗରେ ବୃହତ ଓ ମଧ୍ୟମ ଧରଣର ଶିଳ୍ପ ପ୍ରତିଷ୍ଠା ଲକ୍ଷ୍ୟ ନେଇ ୧୯୬୨ ମସିହାରେ ସ୍ଥାପିତ ହୋଇଥିଲା । ରାଜ୍ୟରେ ପ୍ରଚୁର ଭାବରେ ଗଚ୍ଛିତ ଥିବା ଖଣିଜ ସମ୍ପଦର ସୁବିନିଯୋଗ କରି ବିଭିନ୍ନ ଶିଳ୍ପ କାରଖାନାମାନ ପ୍ରତିଷ୍ଠା କରିଥିଲା । ଏହା ରାଜ୍ୟର ବିଭିନ୍ନ ଅଞ୍ଚଳରେ ପ୍ରାୟ ୧୫ଟି ଶିଳ୍ପ କାରଖାନା ପ୍ରତିଷ୍ଠା କରିଥିଲା । ଏଥିରୁ ଉତ୍ପାଦିତ ଦ୍ରବ୍ୟ ମଧ୍ୟରେ ପିଗ୍ ଆଇରନ, ସ୍ପନପାଇପ୍, ଫେରୋକ୍ରମ, ସିମେଣ୍ଟ, ଟକଷ୍ଟିଲ, ଟ୍ରାନ୍ସମିଶନ ଲାଇନ ଟାୱାରସ୍, କେବୁଲ, ଝୋଟ ଓ ସୂତା, କେମିକାଲସ୍ ଓ ଫାଷ୍ଟନରସ୍ ଇତ୍ୟାଦି ଅନ୍ତର୍ଭୁକ୍ତ ଥିଲା । ରାଜ୍ୟ ଶିଳ୍ପ ଉନ୍ନୟନ ନିଗମ ଲିଃ ଏକ ବୃତ୍ତିଗତ ପରିଚାଳନାଧୀନ କମ୍ପାନୀ ଅଟେ । ଏହା ବିଗତ ବର୍ଷମାନଙ୍କରେ କ୍ରମାଗତ ଲାଭ କରୁଥିବା ଏକ ସଂସ୍ଥା । ଇଡ୍‌କଲ ସାମାଜିକ ଦାୟିତ୍ୱ ବହନକରି ରାଜ୍ୟରେ ଶିଳ୍ପ ନଥିବା ଜିଲ୍ଲାରେ ଶିଳ୍ପ ସୃଷ୍ଟି କରିପାରିଛି । ଏହି ନିଗମ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ (ସମାନ ସଂଖ୍ୟକ) ୧୦,୦୦୦ ଲୋକଙ୍କୁ ନିଯୁକ୍ତି ମଧ୍ୟ ଦେଇପାରିଥିଲା । ଇଡ୍‌କଲ ରାଜ୍ୟର ଅର୍ଥନୈତିକ ଅଭିବୃଦ୍ଧିରେ ଏକ ପ୍ରମୁଖ ଅଂଶଦାନକାରୀ ସଂସ୍ଥା ଅଟେ । ରାଜ୍ୟ ସରକାରଙ୍କର ସରକାରୀ ଶିଳ୍ପାନୁଷ୍ଠାନ ସଂସ୍କାର ନୀତି ଅନୁଯାୟୀ ନିଗମର ଅଧୀନରେ ଥିବା ରୁଗ୍ଣ ସହାୟକ ସଂସ୍ଥାମାନଙ୍କର ଘରୋଇକରଣ ସମ୍ପତ୍ତି ବିକ୍ରୟ କରାଯାଇଅଛି । ବର୍ତ୍ତମାନ ଇଡ୍‌କଲ ଅଧୀନରେ ନିମ୍ନୋକ୍ତ କମ୍ପାନୀମାନ ଅଛନ୍ତି ।

୧. ଇଡ୍‌କଲ କଳିଙ୍ଗ ଆଇରନ୍ ୱାର୍କ୍ସ ଲିଃ (IKIWL), ବଡ଼ବିଲ୍, ଏଠାରେ ଫାଉଣ୍ଡରୀଗ୍ରେଡ୍ ପିଗ୍ଆଇରନ୍ ଓ କାଷ୍ଟଆଇରନ୍ ସ୍ପନ୍ ପାଇପ୍ ତିଆରି କରାଯାଉଛି ।

୨. ଇଡ୍‌କଲ ଫେରୋକ୍ରମ ଓ ଆଲଏଜ୍ ଲିଃ (IFCAL) ଯାଜପୁର ରୋଡ଼ଠାରେ ହାଇକାର୍ବନ ଫେରୋକ୍ରମ ଉତ୍ପାଦନ କରାଯାଉଛି ।

୩. ଇଡ୍‌କଲ ସଫ୍ଟୱେର ଲିଃ, ଭୁବନେଶ୍ୱର ଏହା ରାଜ୍ୟ ସରକାରଙ୍କର ନୋଡ଼ାଲ ଆଇ.ଟି. ଏଜେଣ୍ଟ ଭାବେ କାର୍ଯ୍ୟ କରୁଛି ।

୪. ଏହାବ୍ୟତୀତ କୋଣାର୍କ ଝୁଟ୍ ଲିଃ, ଧାନମଣ୍ଡଳ ଏକ ଲୁହା ଖଣି ରୋଇଡ଼ା 'ସି' ଜୋଡ଼ା ଏବଂ ଏକ କ୍ରୋମାଇଟ୍ ଖଣି ଚଲଙ୍ଗି ଇଡ୍‌କଲ ଅଧୀନରେ କାର୍ଯ୍ୟରତ ଅଛନ୍ତି ।

**କାର୍ଯ୍ୟାବଳୀ- ଏପ୍ରିଲଠାରୁ ମାର୍ଚ୍ଚ-୨୦୦୮ ପର୍ଯ୍ୟନ୍ତ**

ବଜାରରେ ତୀବ୍ର ପ୍ରତିଦ୍ୱନ୍ଦିତା ସତ୍ତ୍ୱେ, ଇଡ୍‌କଲ କାରଖାନା ସମୂହ (IDCOL Group of Companies) ଯଥା- IKIWL, IFCAL ଓ IDCOL MINES ବିଗତ ବର୍ଷ ତୁଳନାରେ ଚଳିତ ବର୍ଷର ଉତ୍ପାଦନ ୩୨% ଅଭିବୃଦ୍ଧି ହାସଲ କରି ୪୭୦ କୋଟି ଟଙ୍କାର ବ୍ୟବସାୟ କରିପାରିଛି, IKIWL & IFCAL ଚଳିତ ଆର୍ଥିକ ବର୍ଷ ଶେଷସୁଦ୍ଧା ଉତ୍ପାଦନରେ ଏକ ନୂତନ ରେକର୍ଡ଼ କରିବାର ଆଶା କରାଯାଏ । IKIWL & IFCALର ଉତ୍ପାଦନ କ୍ଷମତାର ଅଭିବୃଦ୍ଧି ପାଇଁ ୨୦ କୋଟି ଟଙ୍କା ବିନିଯୋଗରେ ଏକ ପ୍ରକଳ୍ପର କାର୍ଯ୍ୟକାରୀ କରାଯାଉଛି । ଏହା ୨୦୦୯ ବର୍ଷରେ ସମ୍ପୂର୍ଣ୍ଣ ହେବ ।

ନିଗମର ଆର୍ଥିକ ଉନ୍ନତି ଘଟିବାରୁ ୨୦୦୭-୦୮ ବର୍ଷରେ ସରକାରୀ ବଣ୍ଡର ଆଗୁଆ ପରିଶୋଧ କରିବା ପାଇଁ ଚେଷ୍ଟା ଚଳାଇଛି । ଚଳିତ ବର୍ଷ ନିଗମ ୩୫ କୋଟି ଟଙ୍କା ବଣ୍ଡ ହୋଲ୍ଡ଼ରଙ୍କୁ ପରିଶୋଧ କରିପାରିଛି । ୨୦୦୬-୦୭ ବର୍ଷରେ ନିଗମ ୧୫ କୋଟି ଟଙ୍କା ପରିଶୋଧ କରିଥିଲା ।

୨୦୦୭-୦୮ ମସିହାରେ ନିଗମ ୫୧ କୋଟି ଟଙ୍କାର ୩୭୩୫୦ ମେଟ୍ରିକ୍ ଟନ୍ କ୍ରୋମ କନସନ୍‌ଟ୍ରେଟ୍ ରପ୍ତାନୀ କରିପାରିଛି, ଯାହାକି ଟେିଲଙ୍ଗି ମାଇନ୍‌ସିର ରେକର୍ଡ଼ ଟର୍ନଓଭର ଅଟେ ।

ବଜାରରେ ଲୌହ ଓ ଇସ୍ପାତ ଦ୍ରବ୍ୟର ମୂଲ୍ୟ ବୃଦ୍ଧିର ସୁଯୋଗ ନେବା ପାଇଁ ନିଗମ ଚିଠା ପ୍ରସ୍ତାବ ୨୦୧୫ ମାଧମରେ ପ୍ରାୟ ୭୦୦ କୋଟି ଟଙ୍କା ବିନିଯୋଗ IKIWL & IFCALର ବୃହତ୍ ସମ୍ପ୍ରସାରଣ କାର୍ଯ୍ୟ କରିବା ନିମନ୍ତେ ପ୍ରସ୍ତାବ ରଖିଅଛି । ଆସନ୍ତା ୨-୩ ବର୍ଷ ମଧରେ ଏହାକୁ ଏକ ଋଣ ମୁକ୍ତ କମ୍ପାନୀ କରାଯିବାର ଆଶା କରାଯାଉଛି ।

**ଜ) ଓଡ଼ିଶା ରାଜ୍ୟ ଅର୍ଥ ନିଗମ (ଓ.ଏସ୍.ଏଫ୍.ସି.), କଟକ**

ଓଡ଼ିଶା ରାଜ୍ୟ ଅର୍ଥ ନିଗମ ସମଗ୍ର ରାଜ୍ୟରେ ଏକ ପ୍ରମୁଖ ବିତ୍ତୀୟ ଅନୁଷ୍ଠାନ ଯିଏ କି ନିରବଚ୍ଛିନ୍ନ ଭାବରେ ୧୯୫୬ ମସିହାଠାରୁ ରାଜ୍ୟବାସୀଙ୍କ ସେବାରେ ଶିଳ୍ପର ଦ୍ରୁତ ପ୍ରସାର ନିମନ୍ତେ ନିୟୋଜିତ ହୋଇଆସୁଅଛି । ଏହି ନିଗମ ରାଜ୍ୟରେ ଥିବା ବିପୁଳ ପ୍ରାକୃତିକ ସମ୍ପଦର ସୁବିନିଯୋଗ ଓ ବେକାରୀ ଦୂରୀକରଣ କରିବା ପାଇଁ ଏକ ଅଗ୍ରଣୀ ଭୂମିକା ଗ୍ରହଣ କରିଅଛି । ନିଗମ ରାଜ୍ୟରେ କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା କରିବା ପାଇଁ ଋଣ ପ୍ରଦାନ କରିବା ସଂଗେସଂଗେ ମଧମ ଧରଣର ଶିଳ୍ପ ପ୍ରତିଷ୍ଠା କରିବା ନିମନ୍ତେ IPICOL ଏବଂ ଅନ୍ୟାନ୍ୟ ଜାତୀୟକରଣ ବ୍ୟାଙ୍କ ସହିତ ମିଶି ଋଣ ପ୍ରଦାନ କରିଥାଏ । ଏହା ଦେଢ଼ କୋଟି ଟଙ୍କା ପର୍ଯ୍ୟନ୍ତ ଦୀର୍ଘମିଆଦି ଋଣ ଅଚଳନ୍ତି ପୁଞ୍ଜି (Fixed Assets) କ୍ଷୁଦ୍ର, ମଧମ ଓ ଅନ୍ୟାନ୍ୟ ଶିଳ୍ପ ପ୍ରତିଷ୍ଠା କରିବା ପାଇଁ ଦେଇଥାଏ । ରାଜ୍ୟରେ ଥିବା ବିଭିନ୍ନ ଜିଲ୍ଲାମାନଙ୍କରେ ଏହି ସଂସ୍ଥା ୧୭ଟି ଶାଖା କାର୍ଯ୍ୟାଳୟ ଖୋଲି ରାଜ୍ୟବାସୀଙ୍କ ହାତପାହାନ୍ତାରେ ଋଣ ପ୍ରଦାନ କରିଆସୁଅଛି । ଅର୍ଥ ନିଗମ ଦୁର୍ବଳ ହୋଇପଡ଼ିଥିବା ଶିଳ୍ପାନୁଷ୍ଠାନମାନଙ୍କର ପ୍ରସାରଣ (Expansion) ଅନ୍ୟତ୍ରିକରଣ (Diversion) ଆଧୁନିକୀକରଣ (Modernisation) ପାଇଁ ଆର୍ଥିକ ସାହାଯ୍ୟ କରିଥାଏ । କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା ଏବଂ ବେକାରୀ ଦୂରୀକରଣରେ ରାଜ୍ୟ ଅର୍ଥନିଗମ ସୂଚାରୁ ରୂପେ କାର୍ଯ୍ୟ କରି ୫୨ ବର୍ଷରେ ପଦାର୍ପଣ କରିସାରିଲାଣି । ସଂପ୍ରତି ରାଜ୍ୟ ଅର୍ଥ ନିଗମର ଆର୍ଥିକ ଅବସ୍ଥା ଦିନକୁ ଦିନ ନିମ୍ନଗାମୀ ହେବାକୁ ଲାଗିଅଛି । କମ୍ ଋଣ ଆଦାୟ ଏବଂ ଶିଳ୍ପାନୁଷ୍ଠାନମାନଙ୍କର ରଗ୍‌ଣତା ଏହାର ଅଚଳନ୍ତି ପୁଞ୍ଜିର ପରିମାଣ ଶତକଡ଼ା ୯୨ ଭାଗରେ ପହଞ୍ଚାଇଛି । ଯେଉଁଥିରେ ମୂଳଧନ ୪୬୭ କୋଟି ଟଙ୍କା ଅଟେ । କମ୍ ଋଣ ଆଦାୟ ସହିତ ଅନ୍ୟାନ୍ୟ ଆନୁଷଙ୍ଗିକ ଯଥା- ଉଚ୍ଚ ସୁଧହାରରେ ଋଣ, ଆବଶ୍ୟକ ତୁଳନାରୁ ଅତ୍ୟଧିକ କର୍ମଚାରୀ ନିଯୁକ୍ତି, କ୍ଷୁଦ୍ର, କୁଟୀର ଏବଂ ଗ୍ରାମୀଣ ଶିଳ୍ପରେ ପୁଞ୍ଜିନିବେଶ ଏହାର ରଗ୍‌ଣ ଅବସ୍ଥା ପାଇଁ ମୁଖ୍ୟତଃ ଦାୟୀ । ତା.୩୧.୩.୦୭ରିଖ ସୁଦ୍ଧା ମୋଟ କ୍ଷତିର ପରିମାଣ ୩୮୦.୯୧ କୋଟି ଟଙ୍କା ।

ଏକ ପକ୍ଷରେ ଉକ୍ତ ଅଚଳନ୍ତି ପୁଞ୍ଜି ଓ ଅନ୍ୟ ପକ୍ଷରେ ଦ୍ରୁତ ଶିଳ୍ପାୟନକୁ ଆଖି ଆଗରେ ରଖି ରାଜ୍ୟ ସରକାର ଅର୍ଥ ନିଗମର ପୁନରୁଦ୍ଧାର ପାଇଁ UTI Bankକୁ ପରାମର୍ଶଦାତା ଭାବରେ ନିଯୁକ୍ତି କରିଥିଲେ । ପୁଙ୍ଖାନୁପୁଙ୍ଖ ଭାବରେ ପର୍ଯ୍ୟାଲୋଚନା କରି ମାର୍ଚ୍ଚ ୨୦୦୪ରେ UTI Bank ତାହାର ସମୀକ୍ଷା ବିବରଣୀ ଦେଇଥିଲେ । ଯାହା ପରବର୍ତ୍ତୀ ଅବସ୍ଥାରେ ନିଗମର Board of Directors, IDBI ଏବଂ SIDBIଦ୍ୱାରା ଗୃହୀତ ହୋଇଥିଲା । ପ୍ରକାଶ ଥାଉ କି ରାଜ୍ୟ ଅର୍ଥ ନିଗମର ପୁନରୁଦ୍ଧାର ଯୋଜନା ରାଜ୍ୟ ସରକାର ବିଧିବଦ୍ଧ ଭାବେ ବିଗତ ୨୦୦୭ ମସିହା ଡିସେମ୍ବର ମାସରେ ସ୍ୱୀକୃତି ପ୍ରଦାନ କରିଥିଲେ । ଅଧୁନା ଏହା କାର୍ଯ୍ୟକାରୀ ହେଉଅଛି ।

**ଓଡ଼ିଶା ରାଜ୍ୟ ଅର୍ଥ ନିଗମ ପୁନରୁଦ୍ଧାର କାର୍ଯ୍ୟକ୍ରମର ଅଗ୍ରଗତି**

କ) ରାଜ୍ୟ ସରକାରଙ୍କ (ଅନୁମୋଦିତ ଯୋଜନା ଅନୁଯାୟୀ)

➢ Authorised Share Capital ୫୦୦ କୋଟି ଟଙ୍କାକୁ ବୃଦ୍ଧି

➢ SLR Bond ପରିଶୋଧ କରିବା ପାଇଁ ୨୫୪ କୋଟି ଟଙ୍କା ପ୍ରଦାନ ଏବଂ ଏହାକୁ redemable preference share capital (ଯାହା ଦଶ ବର୍ଷ ପରିଧି ମଧ୍ୟରେ ପରିଶୋଧ ଯୋଗ୍ୟ)

➢ ୪୦.୨୧ କୋଟି ଟଙ୍କା (ଋଣ ୧୯.୭୬ କୋଟି, LISC ୬.୨୩ କୋଟି ଓ subvention ୧୪.୨୨ କୋଟି ଟଙ୍କା)କୁ Share Capital Reserve Fundକୁ ପରିବର୍ତ୍ତନ ।

➢ ଅନାଦେୟ ଲାଭାଂଶ ୧୦.୬୯ କୋଟି, ସୁଧ ବାବଦକୁ ୩୫.୩୫ କୋଟି (୩୧.୩.୦୬) ସୁଦ୍ଧା ଓ guarantee commission ବାବଦକୁ ୫.୪୬ କୋଟି ଟଙ୍କା ଛାଡ଼ ।

➢ VRS/VSS ପାଇଁ ଆର୍ଥିକ ସହାୟତା ।

**ତା.୩୧.୩.୨୦୦୮ ସୁଦ୍ଧା packageର ଅଗ୍ରଗତି**

➢ ରାଜ୍ୟ ସରକାର ୨୩୦.୮୪ କୋଟି ଟଙ୍କା SLR Bondର ଏକକାଳୀନ (OTS) ପରିଶୋଧ ପାଇଁ ଦେଇଛନ୍ତି ।

➢ VRS/VSSପାଇଁ ୧୩.୯୦ କୋଟି ଟଙ୍କା ପ୍ରଦାନ ।

➢ Authorised Share Capital ୫୦୦ କୋଟି ଟଙ୍କାକୁ ବୃଦ୍ଧି ପାଇଁ ସରକାର ନିଷ୍ପତ୍ତି ନେଇଛନ୍ତି ।

**ଖ) SIDBI ଅନୁମୋଦିତ ଯୋଜନା ଅନୁଯାୟୀ**

➢ ଶତକଡ଼ା ୨୦ ଭାଗ ବକେୟା ମୂଳଧନ (୪୧.୩୫ କୋଟିକୁ Preference Share Capitalକୁ ପରିବର୍ତ୍ତନ) ଶତକଡ଼ା ୮୦ ଭାଗ ବକେୟା ମୂଳଧନକୁ ୧୧ ବର୍ଷ ମଧ୍ୟରେ ବାର୍ଷିକ ୭.୫ ସୁଧରେ ଦୁଇ ବର୍ଷ moratorium ସହିତ ପରିଶୋଧ ।

➢ ଶତକଡ଼ା ୨୦ ଭାଗ ବକେୟା ସୁଧ (୧୭.୯୧ କୋଟି) ଦୁଇ ବର୍ଷରେ ପରିଶୋଧ ଏବଂ ଅବଶିଷ୍ଟ ୭୧.୬୫ କୋଟି ସୁଧକୁ ଛାଡ଼ ।

➢ ପୁନଃ ୭.୫% ସୁଧ ହାରରେ ଋଣ ପ୍ରଦାନ ।

**SIDBI ନିମ୍ନ ପ୍ରଦତ୍ତ ପ୍ରସଙ୍ଗ ଉପରେ ସମ୍ମତି ପ୍ରଦାନ କରିଅଛନ୍ତି -**

➢ Refinanceର ବକେୟା ମୂଳଧନ ବାବଦକୁ ୧୯୭ କୋଟି ଟଙ୍କା ୩୦.୯.୦୫ଠାରୁ ଦଶ ବର୍ଷ ମଧ୍ୟରେ ମାସିକିଆ କିସ୍ତିରେ ପରିଶୋଧ କରିବାକୁ ହେବ ।

➢ ବକେୟା ମୂଳଧନ ଉପରେ ସୁଧର ହାର ୧୧.୭୦%ଠାରୁ ୮% ହ୍ରାସ ଏବଂ ପୁନଶ୍ଚ ପରେ ସୁଧହାର ୭.୫୦%କୁ ହ୍ରାସ ।

➢ ତା.୩୦.୯.୦୫ରିଖ ସୁଦ୍ଧା ମୋଟ ସୁଧର ୫୦% (୪୮.୦୯ କୋଟି ଟଙ୍କା) ଛାଡ଼ ଏବଂ ଯେତେବେଳେ ଅର୍ଥ ନିଗମର Loan Account SIDBI ପାଖରେ Standard Account ହେବ ସେତେବେଳେ ଅବଶିଷ୍ଟ ୫୦% ସୁଧ ଛାଡ଼ ହେବ ।

➢ Capacity Building ପାଇଁ ପ୍ରୋତ୍ସାହନ ।

➢ ଅର୍ଥ ନିଗମ ଯଥା ସମୟରେ restructured dues ନିୟମିତ ପରିଶୋଧ କରି ଆସୁଅଛି ଏବଂ ତା.୩୧.୦୩.୦୮ରିଖ ସୁଦ୍ଧା କୌଣସି ବାକିଆ ଦେୟ ନାହିଁ । ୨୦୦୭-୦୮ ଆର୍ଥିକ ବର୍ଷ ସୁଦ୍ଧା ନିଗମ ୮୫ କୋଟି ଟଙ୍କା ପରିଶୋଧ କରିଅଛି ।

**IDBI ଅନୁମୋଦିତ ଯୋଜନା ଅନୁଯାୟୀ**

➢ LISC ୬.୨୩ କୋଟି ଟଙ୍କା SIDBIକୁ ବଦଳି (Transfer) ଏବଂ ୬.୬୯ କୋଟି ଟଙ୍କା ସୁଧ ଛାଡ଼ ।

➢ ଶତକଡ଼ା ୨୦ ଭାଗ ବକେୟା ମୂଳ (୩.୭୫ କୋଟି ଟଙ୍କାକୁ ୬.୫% debenturesକୁ ପରିବର୍ତ୍ତନ ଯାହାକି ଆର୍ଥିକ ବର୍ଷ ୨୦୦୬-୦୭ ଏବଂ ୨୦୦୭-୦୮ରେ ପରିଶୋଧ କରାଯିବ ।

➢ ଶତ ପ୍ରତିଶତ (୨୧.୦୫ କୋଟି ଟଙ୍କା) ସୁଧ ଛାଡ଼ ।

➢ ଅବଶିଷ୍ଟ ୮୦% ଭାଗ ବକେୟା ମୂଳ (୧୪.୯୧ କୋଟି ଟଙ୍କା) ୨୦୦୫-୦୬ ଓ ୨୦୦୬-୦୭ ଆର୍ଥିକ ବର୍ଷରେ ପରିଶୋଧ ।

➢ ତା.୩୧.୩.୦୭ରିଖ ସୁଦ୍ଧା ରାଜ୍ୟ ଅର୍ଥ ନିଗମ ୧୮.୬୭ କୋଟି ଟଙ୍କା ପରିଶୋଧ କରିଅଛି, ବର୍ତ୍ତମାନ ସୁଦ୍ଧା IDBIର କୌଣସି ଟଙ୍କା ସୁଧ ବାବଦକୁ ବକେୟା ନାହିଁ ।

**ଗ) IDBI ନିମ୍ନ ପ୍ରଦତ୍ତ ପ୍ରସଙ୍ଗ ଉପରେ ସମ୍ମତି ପ୍ରଦାନ କରିଛନ୍ତି**

➢ ବକେୟା ମୂଳଧନ (୧୮.୬୭ କୋଟି ଟଙ୍କା) ଏକକାଳୀନ ଋଣ ପରିଶୋଧ ଯୋଜନା ଅନୁଯାୟୀ ୦୫-୦୬ ଏବଂ ୦୬-୦୭ ଆର୍ଥିକ ବର୍ଷ ସୁଦ୍ଧା ପରିଶୋଧ କରିବା ପାଇଁ ସ୍ୱୀକୃତି ପ୍ରଦାନ ।

➢ ୨୧.୦୫ କୋଟି ଟଙ୍କା ସୁଧ ଛାଡ଼ ।

➢ ତା.୩୧.୦୩.୦୭ ସୁଦ୍ଧା ରାଜ୍ୟ ଅର୍ଥ ନିଗମ ୧୮.୬୭ କୋଟି ଟଙ୍କା ପରିଶୋଧ କରିଅଛି । ବର୍ତ୍ତମାନ ସୁଦ୍ଧା କୌଣସି ଟଙ୍କା ସୁଧ ବାବଦକୁ ବକେୟା ନାହିଁ ।

**ଘ) Bond Holders (ଅନୁମୋଦିତ ଯୋଜନା ଅନୁଯାୟୀ)**

ରାଜ୍ୟ ସରକାରଙ୍କ ସହାୟତାରେ ଅର୍ଥ ନିଗମ Bond ମୂଳଧନ ବାବଦରେ ୩୦୨ କୋଟି ଟଙ୍କା ଏକକାଳୀନ ଋଣ ପରିଶୋଧ କରିବ ଏବଂ ୧୩୫ କୋଟି ଟଙ୍କା ସୁଧ ଛାଡ଼ ହେବ ।

**ତା.୩୧.୦୩.୦୮ ସୁଦ୍ଧା ଅଗ୍ରଗତି**

➢ ଓଡ଼ିଶା ରାଜ୍ୟ ଅର୍ଥ ନିଗମ ୨୯ ଗୋଟି ବ୍ୟାଙ୍କର ୨୮୯.୭୮କୋଟି ଟଙ୍କା ଏକକାଳୀନ ଋଣ ପରିଶୋଧ ଯୋଜନାରେ ଋଣ ପରିଶୋଧ କରିଛି ଏବଂ ୧୪୧.୪୫ କୋଟି ଟଙ୍କା ସୁଧ ଛାଡ଼ ପାଇଛି । ତନ୍ମଧ୍ୟରୁ ୧୪.୭୫ କୋଟି ଟଙ୍କା Restucturing ପୂର୍ବରୁ ପଇଠ ହୋଇଥିଲା । ବର୍ତ୍ତମାନ Bond holdersଙ୍କର ବକେୟା ମୂଳ ୨୬.୯୭ କୋଟି ଟଙ୍କା ଓ ସୁଧ ବାବଦକୁ ୯.୨୫ କୋଟି ଟଙ୍କା ବକେୟା ଅଛି ।

➢ ରାଜ୍ୟ ସରକାର ୨୩୦.୮୪ କୋଟି ଏବଂ ଅର୍ଥ ନିଗମ ୬୮.୯୫ କୋଟି ଟଙ୍କା (୧୦.୦୧ କୋଟି ଟଙ୍କା ସୁଧ ବାବଦକୁ) ସମୁଦାୟ SLR Bond ବାବଦରେ ୨୮୯.୭୮ କୋଟି ଟଙ୍କା ପଇଠ କରିଅଛନ୍ତି ।

**ଅନ୍ୟାନ୍ୟ ପ୍ରମୁଖ କାର୍ଯ୍ୟାବଳୀ**

ରାଜ୍ୟ ସରକାରଙ୍କର ଅଙ୍କୁଶ ଯୋଗୁଁ ବିଗତ ତିନି ବର୍ଷ ଧରି ନିଗମର ଋଣ ପ୍ରଦାନ କାର୍ଯ୍ୟ ବନ୍ଦ ରହିଅଛି । ତା.୩୧.୦୩.୦୮ ସୁଧା ଋଣ ପ୍ରଦାନ କ୍ଷେତ୍ରରେ ସଫଳତାର ଚିଠା ନିମ୍ନଲିଖିତ ସାରଣୀରେ ଦିଆଗଲା ।

| | | ସଂଖ୍ୟା | ଟଙ୍କାର ପରିମାଣ |
|---|---|---|---|
| କ୍ଷୁଦ୍ର ଶିଳ୍ପ | - | ୧୫୭୨୩ | ୬୬୭୪୬.୭୦ ଲକ୍ଷ |
| ପରିବହନ ଶିଳ୍ପ | - | ୯୧୩୭ | ୨୬୦୧୯.୩୮ ଲକ୍ଷ |

| | | | |
|---|---|---|---|
| ଅନ୍ୟାନ୍ୟ | - | ୩୩୪୭ | ୩୭୭୪୬.୨୯ ଲକ୍ଷ |
| ମୋଟ | - | ୨୮୨୦୭ | ୧୩୦୫୧୨.୩୭ ଲକ୍ଷ |

**ତା.୩୧.୦୩.୦୮ ସୁଦ୍ଧା ସଫଳତାର ସଂକ୍ଷେପ ବିବରଣୀ**

| | | |
|---|---|---|
| ଋଣ ମଞ୍ଜୁରୀ (Sanction) | - | ୧୩୦୫.୩୩ କୋଟି |
| ଋଣ ବଣ୍ଟନ (Disb.) | - | ୧୩୦୫.୨୨ କୋଟି |
| ଋଣ ଆଦାୟ (Recovery) | - | ୧୭୫୩.୭୫ କୋଟି |
| ବକେୟା ଋଣର ପରିମାଣ (Outstanding) | - | ୪୩୮.୨୮ କୋଟି |

**୦୭-୦୮ ଆର୍ଥିକ ସୁଦ୍ଧା ରାଜ୍ୟ ଅର୍ଥ ନିଗମର ସମ୍ପର୍କରେ**

| | | |
|---|---|---|
| ଋଣ ଆଦାୟ | - | ୬୦.୦୦ କୋଟି |
| SIDBI ଦେୟ ପ୍ରଦାନ | - | ୩୦.୦୦ କୋଟି |
| Bondholders କୁ ଦେୟ ପ୍ରଦାନ | - | ୨୦.୯୦ କୋଟି |
| ରାଜ୍ୟ ସରକାରଙ୍କଠାରୁ ଅନୁଦାନ ଗ୍ରହଣ (Subsidy) | - | ୬.୧୭ କୋଟି |
| ଅନୁଦାନ ପ୍ରଦାନ (Subsidy) | - | ୪.୩୦ କୋଟି (Provisional) |

**ତା.୩୧.୦୩.୦୮ ସୁଦ୍ଧା ଏକକାଳୀନ ଋଣ ପରିଶୋଧ ଯୋଜନା OTS-07ର ଅଗ୍ରଗତି**

| | | |
|---|---|---|
| OTS-07 ଯୋଜନାର ଆରମ୍ଭ | - | ମାର୍ଚ୍ଚ ୨୦୦୭ |
| ଯୋଜନାର ସମୟ ସୀମା | - | ୩୧.୧୨.୨୦୦୭ |
| ଏହି Schemeରେ ଦରଖାସ୍ତ ହସ୍ତଗତ ହୋଇଅଛି | - | ୧୫୫୧ |
| ନୂତନ କେସ୍ | - | ୧୨୯୭ |
| ଅନ୍ୟ OTSରୁ Switch Over (ପରିବର୍ତ୍ତନ) | - | ୨୫୪ (୩୧.୦୧.୦୮ ସୁଦ୍ଧା) |
| ୩୧.୦୧.୦୮ ସୁଦ୍ଧା ସ୍ୱୀକୃତି ମିଳି ସାରିଥିବା କେସ୍‌ର ସଂଖ୍ୟା | - | ୧୨୫୦ |

| | ସଂଖ୍ୟା | ଟଙ୍କାର ପରିମାଣ |
|---|---|---|
| ଫଏସଲା ହୋଇଥିବା Case | ୧୨୫୦ | ୫୯.୮୩ କୋଟି |
| ସମ୍ପୂର୍ଣ୍ଣ ଆଦାୟ ହୋଇଥିବା Case | ୪୭୧ | ୧୧.୯୫ କୋଟି |
| ଆଂଶିକ ଆଦାୟ ହୋଇଥିବା Case | - - | ୧୨.୬୨ କୋଟି |

**୯) ଓଡ଼ିଶା କ୍ଷୁଦ୍ରଶିଳ୍ପ ନିଗମ ଲିମିଟେଡ୍ (ଓ.ଏସ୍.ଆଇ.ସି.), କଟକ**

୧୯୫୬ ମସିହାରେ କମ୍ପାନୀ ନିୟମ ଅନୁଯାୟୀ ୧୯୭୨ ମସିହାରେ ଓଡ଼ିଶା କ୍ଷୁଦ୍ରଶିଳ୍ପ ନିଗମ ସୃଷ୍ଟି ହେଲା । ଏହି ନିଗମର ମୁଖ୍ୟ ଉଦ୍ଦେଶ୍ୟ ହେଲା ଓଡ଼ିଶାରେ କ୍ଷୁଦ୍ର ଶିଳ୍ପାନୁଷ୍ଠାନଗୁଡ଼ିକର ସ୍ୱାର୍ଥ ରକ୍ଷାପାଇଁ ସାହାଯ୍ୟ, ସହଯୋଗ ଓ ପରାମର୍ଶ ଯୋଗାଇ ଦେବା ଓ

ସେମାନଙ୍କ ବ୍ୟବସାୟ କଞ୍ଚାମାଲ ସଂଗ୍ରହ ଓ ଅଧିଗ୍ରହଣରେ ସାହାଯ୍ୟ ପ୍ରଦାନ କରିବା ଏବଂ ସର୍ବୋପରି ସେମାନଙ୍କ ଉତ୍ପାଦନ ପ୍ରଣାଳୀର ଉନ୍ନତି, ଉତ୍ପାଦନ କୌଶଳ ଓ ସେମାନଙ୍କ ଉତ୍ପାଦିତ ଦ୍ରବ୍ୟର ବିପଣନ ପାଇଁ ସାହାଯ୍ୟ କରିବା ।

ଓଡ଼ିଶା କ୍ଷୁଦ୍ର ଶିଳ୍ପ ନିଗମ ଲୁହା ଓ ଇସ୍ପାତ, ପିଚୁ, କୋଇଲା ଓ ପଲିମର୍ ଆଦି କଞ୍ଚାମାଲ ଯୋଗାଉଛି । ୨୦୦୭-୦୮ ବର୍ଷରେ (ତା.୩୧.୩.୦୮ ସୁଦ୍ଧା) ଏହି ନିଗମ ୨୦୫.୧୭ କୋଟି ଟଙ୍କାର କଞ୍ଚାମାଲ ଯୋଗାଇଛି ।

ବିପଣନ ସହାୟତା ଯୋଜନା ଅନ୍ତର୍ଗତ ଶିଳ୍ପ ସଂସ୍ଥାଗୁଡ଼ିକ ସେମାନଙ୍କର ଉତ୍ପାଦର ବିପଣନ ପାଇଁ ନିଗମ ସହଯୋଗ ଯୋଗାଇ ଦେଉଛି । ଏହି ଯୋଜନାରେ ନିଗମ ରାଜ୍ୟ ସରକାର ତଥା ଅର୍ଦ୍ଧ ସରକାରୀ ସଂସ୍ଥାମାନଙ୍କଠାରୁ ସ୍ଥଳ ଯୋଗାଣ ଆଦେଶ ସଂଗ୍ରହ କରି କ୍ଷୁଦ୍ର ଶିଳ୍ପ ସଂସ୍ଥାମାନଙ୍କ ମାଧ୍ୟମରେ କାର୍ଯ୍ୟକାରୀ କରାଇଥାଏ । ଏହି ପରିକଳ୍ପନାରେ ନିଗମ ଚଳିତ ବର୍ଷ ୧୧.୪୮ କୋଟି ଟଙ୍କାର ଲକ୍ଷ୍ୟପୂରଣ କରିପାରିଛି ।

ଓଡ଼ିଶା କ୍ଷୁଦ୍ର ଶିଳ୍ପ ନିଗମ ବିଭିନ୍ନ ସରକାରୀ ବିଭାଗମାନଙ୍କର ଅଣବ୍ୟବହାର୍ଯ୍ୟ ଟୁକୁରା ପଦାର୍ଥ ସବୁକୁ ସଂଗ୍ରହ କରି ସେସବୁକୁ ଶିଳ୍ପ ସଂସ୍ଥାମାନଙ୍କୁ ଯୋଗାଇ ଦେଉଅଛି । ସେହିପରି ନିଗମ ବ୍ୟବସାୟିକ ବିଭାଗର କମ୍ପ୍ୟୁଟରୀକରଣ ଓ ୱେବ୍‌ସାଇଟ୍ ଇତ୍ୟାଦି କାର୍ଯ୍ୟ ହାତକୁ ନେଇଛି ।

**ଞ) ଓଡ଼ିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ଼ (ଓ.କେ.ଭି.ଆଇ.ବି.) ଭୁବନେଶ୍ୱର**

ଓଡ଼ିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ଼ ତା.୧୫.୬.୧୯୫୬ରେ ଗଠିତ ଏକ ବୈଧାନିକ ସଂସ୍ଥା ଅଟେ । ରାଜ୍ୟରେ ଖଦି ଓ ଗ୍ରାମ୍ୟ ଶିଳ୍ପର ସଂଗଠନ, ପ୍ରସାର ତଥା ନିୟନ୍ତ୍ରଣ ଏହାର ମୁଖ୍ୟ କାର୍ଯ୍ୟ ଅଟେ । ରାଜ୍ୟରେ ଖଦି ଓ ଗ୍ରାମୋଦ୍ୟୋଗ ଆୟୋଗ, ମୁମ୍ବାଇ ଋଣ ଓ ଅନୁଦାନ ମାଧ୍ୟମରେ ପୁଞ୍ଜି ଯୋଗାଇ ଦେଇଥାଆନ୍ତି । ବୋର୍ଡ଼ ଖଦି ଓ ଗ୍ରାମୋଦ୍ୟୋଗ ଆୟୋଗଙ୍କଦ୍ୱାରା ପ୍ରଚଳିତ ବିଭିନ୍ନ କାର୍ଯ୍ୟକ୍ରମ ଯୋଜନା ଅନୁସୃତ ନିୟମାନୁଯାୟୀ ରାଜ୍ୟରେ କାର୍ଯ୍ୟକାରୀ କରିଥାଆନ୍ତି । ଖଦି ଓ ଗ୍ରାମୋଦ୍ୟୋଗ ଆୟୋଗ ୧୯୫୬ ମସିହାରୁ ୧୯୯୬ ମସିହା ପର୍ଯ୍ୟନ୍ତ Pattern of Assistance Scheme, ୧୯୯୬ରୁ ୧୯୯୯ ପର୍ଯ୍ୟନ୍ତ Consortium Bank Credit ଏବଂ ୧୯୯୯ରୁ ଅଦ୍ୟାବଧି ଗ୍ରାମୋଦ୍ୟୋଗ ରୋଜଗାର ଯୋଜନା ପ୍ରଚଳନ କରିଛନ୍ତି, ଯାହାକି ବର୍ତ୍ତମାନ ମଧ୍ୟ ବଳବତ୍ତର ଅଛି । ବୋର୍ଡ଼ର ସମସ୍ତ ପ୍ରଶାସନିକ ଖର୍ଚ୍ଚ ରାଜ୍ୟ ସରକାର ଗ୍ରାଣ୍ଟ-ଇନ୍-ଏଡ୍ ମାଧ୍ୟମରେ ଯୋଗାଇ ଦେଇଥାଆନ୍ତି ।

ବୋର୍ଡ଼ ଆରମ୍ଭରୁ ୧୯୯୫-୯୬ ବର୍ଷ ପର୍ଯ୍ୟନ୍ତ ପ୍ରତ୍ୟେକ ବ୍ଲକରେ ଗୋଟିଏ କରି ବ୍ଲକ୍‌ସ୍ତରୀୟ ହିତାଧିକାରୀ ବହୁମୁଖୀ ସମବାୟ ସମିତି ସମେତ ମୋଟ ୧୮୬୫ ଗୋଟି ସମବାୟ ସମିତି/ଅନୁଷ୍ଠାନ ଗଠନ କରି ସେମାନଙ୍କ ମାଧ୍ୟମରେ ଗ୍ରାମାଞ୍ଚଳର ହିତାଧିକାରୀମାନଙ୍କୁ ଋଣ ଯୋଗାଇ ଆସୁଥିଲା । ଏହାର ଏକ ବିଭାଗୀୟ ତାଲିକା ସଂଲଗ୍ନ କରାଗଲା । ଏହି ସମବାୟ ସମିତିମାନଙ୍କ କାର୍ଯ୍ୟକଳାପର ବିଗତ ୫ ବର୍ଷର ବିବରଣୀ ନିମ୍ନରେ ପ୍ରଦତ୍ତ କରାଗଲା ।

| ବର୍ଷ | ଉତ୍ପାଦନ (ଲକ୍ଷ ଟଙ୍କାରେ) | ବିକ୍ରୟ (ଲକ୍ଷ ଟଙ୍କାରେ) | କର୍ମ ନିଯୁକ୍ତି ସଂଖ୍ୟା (ସଂଖ୍ୟାରେ) |
|---|---|---|---|
| ୨୦୦୩-୦୪ | ୫୪୧୫.୧୦ | ୫୭୦୨.୬୫ | ୨୪୫୬୯୨ |
| ୨୦୦୪-୦୫ | ୩୯୭୪.୯୯ | ୪୮୧୨.୫୯ | ୯୪୩୩୭ |
| ୨୦୦୫-୦୬ | ୩୭୬୯.୫୪ | ୪୫୧୦.୪୦ | ୧୪୭୦୪୭ |
| ୨୦୦୬-୦୭ | ୩୧୪୯.୫୦ | ୩୮୧୦.୧୦ | ୭୯୩୪୩ |
| ୨୦୦୭-୦୮ | ୪୪୩.୪୬ | ୫୫୩.୪୨ | ୩୫୬୨୩ |

(୩୧ ମାର୍ଚ୍ଚ ୨୦୦୮ ସୁଦ୍ଧା)

ଏତଦ୍‌ବ୍ୟତୀତ ୩୫୮ ଜଣ ବ୍ୟକ୍ତିବିଶେଷଙ୍କୁ ସି.ବି.ସି. ଋଣ ମାଧ୍ୟମରେ ବିଭିନ୍ନ ଗ୍ରାମ୍ୟ ଶିଳ୍ପ ଏକକ ପ୍ରତିଷ୍ଠା କରିବା ନିମନ୍ତେ ବିଭିନ୍ନ ସମବାୟ ଓ ଗ୍ରାମ୍ୟ ବ୍ୟାଙ୍କ ଜରିଆରେ ଋଣ ଓ ଅନୁଦାନ ଯୋଗାଇ ଦିଆଯାଇଛି । ଉପରୋକ୍ତ ଦୁଇ ଗୋଟି ଯୋଜନା ଯଥାକ୍ରମେ ୧୯୯୫ ଓ ୧୯୯୯ ମସିହାରୁ ଖଦି ଓ ଗ୍ରାମୋଦ୍ୟୋଗ ଆୟୋଗ ବନ୍ଦ କରି ଦେଇଅଛନ୍ତି ।

୧୯୯୯ ମସିହାଠାରୁ ଗ୍ରାମୋଦ୍ୟୋଗ ରୋଜଗାର ଯୋଜନା ଗ୍ରାମୀଣ ନିଯୁକ୍ତି ସୃଷ୍ଟିକାରୀ ନାମରେ ରାଜ୍ୟରେ କାର୍ଯ୍ୟକାରୀ ହେଉଅଛି । ଏହି ଯୋଜନା ପରୀକ୍ଷାମୂଳକ ଭାବରେ ୧୯୯୫-୯୬ ବର୍ଷଠାରୁ ଆରମ୍ଭ କରାଯାଇଥିଲେ ମଧ୍ୟ ୧୯୯୯-୨୦୦୦ ବର୍ଷଠାରୁ ଏହା ନିୟମିତ ଯୋଜନା ଭାବେ କାର୍ଯ୍ୟକାରୀ ହେଉଅଛି । ଏହି ଯୋଜନା ମାଧ୍ୟମରେ ଗ୍ରାମାଞ୍ଚଳରେ କୌଣସି ନୂତନ ଗ୍ରାମୋଦ୍ୟୋଗ ପ୍ରତିଷ୍ଠା ନିମନ୍ତେ ବ୍ୟାଙ୍କ ଜରିଆରେ ସର୍ବାଧିକ ୨୫.୦୦ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ଋଣ ଯେକୌଣସି ବ୍ୟକ୍ତି ବିଶେଷ/ ଉଦ୍ୟୋଗୀ/ସଂସ୍ଥା/ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ଯୋଗାଇ ଦିଆଯାଇପାରିବ । ୧୯୯୯-୨୦୦୦ ବର୍ଷଠାରୁ ୩୧ ମାର୍ଚ୍ଚ ୨୦୦୮ ସୁଦ୍ଧା ଓଡ଼ିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ଼ ୩୬୨୬ ଜଣ ହିତାଧିକାରୀଙ୍କ ସପକ୍ଷରେ ୨୭.୨୪ କୋଟି ଟଙ୍କାର ମାର୍ଜିନ ରାଶି ଯୋଗାଇ ଦେଇ ୩୪୪୩୨ ଜଣଙ୍କୁ କର୍ମ ନିଯୁକ୍ତି ଯୋଗାଇ ଦେଇପାରିଛି । ଏହାର ଏକ ତାଲିକା ପରିଶିଷ୍ଟ 'କ'ରେ ସଂଲଗ୍ନ କରାଗଲା । ଗ୍ରାମୋଦ୍ୟୋଗ ରୋଜଗାର ଯୋଜନା ମାଧ୍ୟମରେ ବ୍ୟକ୍ତିବିଶେଷଙ୍କୁ ଆର୍ଥିକ ସହାୟତା ଯୋଗାଇ ଦେବା ବ୍ୟତୀତ ଗୋଷ୍ଠୀ ଉନ୍ନୟନ, ବାଣିଜ୍ୟିକ ସହାୟତା, ଡିଜାଇନ ବିକାଶ ସ୍ଫୁର୍ତି ଓ ପ୍ରୋଡ଼ିପ ପରି ଯୋଜନା ମାଧ୍ୟମରେ ସର୍ବାଧିକ ୭୫% ପର୍ଯ୍ୟନ୍ତ ମାର୍ଜିନ ରାଶି ଯୋଗାଇ ଦେବାର ବ୍ୟବସ୍ଥା ମଧ୍ୟ ରହିଛି ।

ରାଜ୍ୟରେ ଓଡ଼ିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ଼ଦ୍ୱାରା ସ୍ୱୀକୃତ ୪୦ ଗୋଟି ଖଦି ସମବାୟ ସମିତି/ଅନୁଷ୍ଠାନ ମଧ୍ୟରୁ ୩୬ ଗୋଟିକୁ ଖଦି ବୋର୍ଡ଼ଙ୍କଦ୍ୱାରା ଆର୍ଥିକ ସହାୟତା ପ୍ରଦାନ କରାଯାଇଅଛି ଏବଂ ଅବଶିଷ୍ଟ ୪ ଗୋଟି ଅନୁଷ୍ଠାନ Interest Subsidy Scheme ଦ୍ୱାରା ଆର୍ଥିକ ସହାୟତା ଆହରଣ କରିଛନ୍ତି । ଏଥିମଧ୍ୟରୁ ୭ ଗୋଟି ଅନୁଷ୍ଠାନର ନିଜସ୍ୱ ଜମି ଅଛି । ୨୦ ଗୋଟି ଅନୁଷ୍ଠାନର ନିଜସ୍ୱ ଘର ଅଛି । ୫ ଗୋଟି ଅନୁଷ୍ଠାନ ସପକ୍ଷରେ ଖଦି କମିଶଙ୍କର ପ୍ରମାଣପତ୍ର ନବୀକରଣ ହୋଇଅଛି ।

୧୯୯୯ ମସିହା ମହାବାତ୍ୟା ଓ ୨୦୦୧ ମସିହାର ପ୍ରଳୟଙ୍କରୀ ବନ୍ୟାଦ୍ୱାରା ଖଦି ଓ ଗ୍ରାମୋଦ୍ୟୋଗ ସମିତିମାନଙ୍କ ପ୍ରଭୂତ କ୍ଷତି ଯୋଗୁଁ ଖଦି ଓ ଗ୍ରାମୋଦ୍ୟୋଗ କାର୍ଯ୍ୟକ୍ରମ ବହୁଳ ଭାବରେ ବାଧାପ୍ରାପ୍ତ ହୋଇଛି । ଖଦି କାର୍ଯ୍ୟକ୍ରମର ପୁନରୁଦ୍ଧାର ନିମନ୍ତେ ଗତ ତା.୧୧.୧୧.୨୦୦୬ରିଖରେ ମାନ୍ୟବର ରାଜ୍ୟପାଳଙ୍କ ଅଧ୍ୟକ୍ଷତାରେ ଓ ଖଦି ଓ ଗ୍ରାମୋଦ୍ୟୋଗ ଆୟୋଗର ଅଧ୍ୟକ୍ଷଙ୍କ ଉପସ୍ଥିତିରେ ଏକ ଉଚ୍ଚସ୍ତରୀୟ ବୈଠକ ଅନୁଷ୍ଠିତ ହୋଇଯାଇଛି । ଉକ୍ତ ବୈଠକର ସିଦ୍ଧାନ୍ତ ଅନୁଯାୟୀ ଖଦି ସମିତିମାନଙ୍କ କ୍ଷୟକ୍ଷତି ତଥା ଅନ୍ୟାନ୍ୟ ଅସୁବିଧା ସବୁର ଆକଳନ ନିମିତ୍ତ ଆବଶ୍ୟକୀୟ ପଦକ୍ଷେପ ନିଆଯାଇଛି । ରାଜ୍ୟରେ ଖଦି କାର୍ଯ୍ୟକ୍ରମର ଏକ ମଧ୍ୟବର୍ତ୍ତୀ ରିପୋର୍ଟ ରାଜ୍ୟ ସରକାରଙ୍କ ଶିଳ୍ପ ବିଭାଗକୁ ବୋର୍ଡ଼ ପତ୍ର ସଂଖ୍ୟ-୩୨୪ ତା.୦୮.୦୧.୨୦୦୭ଦ୍ୱାରା ଜଣାଇ ଦିଆଯାଇଛି । ରାଜ୍ୟ ସରକାରଙ୍କର ସହଯୋଗରେ ବାକିଆ ରିବେଟ୍ ପ୍ରଦାନ, ବାଣିଜ୍ୟିକ ସହାୟତା, ଭିତ୍ତିଭୂମି, କଞ୍ଚାମାଲ ତଥା ପ୍ରୋସେସିଂ ଏକକ ସ୍ଥାପନ ପାଇଁ ଆବଶ୍ୟକୀୟ ସହାୟତା ପ୍ରଦାନ ପାଇଁ ପଦକ୍ଷେପ ନିଆଯାଇଛି ।

ଓଡ଼ିଶା ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ଼ ପରିସରରେ ଏକ କ୍ଷୁଦ୍ର ମହୁ ବିଶୋଧନ ଏକକ ପ୍ରତିଷ୍ଠା ନିମନ୍ତେ ଖଦି ବୋର୍ଡ଼ଙ୍କ ତରଫରୁ ପ୍ରସ୍ତାବିତ ଟ.୧୬,୨୫,୦୦୦ଙ୍କାର ବଜେଟ୍ ଅଟକଳ ଖଦି ଓ ଗ୍ରାମୋଦ୍ୟୋଗ ଆୟୋଗ, ଭୁବନେଶ୍ୱରଙ୍କଦ୍ୱାରା ଅନୁଷ୍ଠିତ ରାଜ୍ୟସ୍ତରୀୟ ଆପ୍ରାଇଜାଲ କମିଟି (SLAC)ଙ୍କ ସୁପାରିଶକ୍ରମେ ଖଦି ଓ ଗ୍ରାମୋଦ୍ୟୋଗ ଆୟୋଗ, ମୁମ୍ବାଇଙ୍କ ନିକଟକୁ ଅନୁମୋଦନ ନିମନ୍ତେ ପଠାଯାଇଛି ।

ଖଦି କାର୍ଯ୍ୟକ୍ରମ ପୁନରୁଦ୍ଧାର ନିମନ୍ତେ ୩.୧୮ କୋଟି ଟଙ୍କା ବଜେଟ ଅଟକଳର ଏକ ପଥଦର୍ଶୀ ପରିଯୋଜନା ବଲାଙ୍ଗୀର ଜିଲ୍ଲାର ଖପ୍ରଖୋଲ ବ୍ଲକ୍‌ରେ ପ୍ରତିଷ୍ଠା ପାଇଁ ବୋର୍ଡ଼ ପ୍ରସ୍ତାବ ଦେଇଛନ୍ତି ।

ଉଦ୍ୟୋଗପୁରୀ, ଭୁବନେଶ୍ୱରରେ ଦୁଇ ଗୋଟି ହାତ ତିଆରି କାଗଜ ପ୍ରତିଷ୍ଠା ନିମନ୍ତେ ଯଥା- Shredded currency wart ଉପରେ ଆଧାର କରି ଟ.୨୯,୯୨,୦୦୦/-ର ଓ ଅନ୍ୟ ଏକ ଏକକ ଟ.୬,୬୪,୦୦୦/-ର ପ୍ରସ୍ତାବ ବୋର୍ଡ଼ ଦେଇଅଛନ୍ତି ।

ଉଦ୍ୟୋଗପୁରୀଠାରେ ଖଦି ଉତ୍ପାଦନ ଓ ତାଲିମ କେନ୍ଦ୍ର ପ୍ରତିଷ୍ଠା ନିମନ୍ତେ ଟ.୧.୦୨ କୋଟି ମୂଲ୍ୟର ବଜେଟ୍ ଅଟକଳ ପ୍ରସ୍ତାବ ବୋର୍ଡ଼ ସରକାରଙ୍କୁ ଦେଇଛନ୍ତି ।

ଏହି ତିନିଗୋଟି ପ୍ରସ୍ତାବ ସରକାରଙ୍କ ସକ୍ରିୟ ବିଚାରାଧୀନ ଅଛି ।

ଗ୍ରାମୋଦ୍ୟୋଗ ରୋଜଗାର ଯୋଜନାର ପ୍ରଗତି - ପରିଶିଷ୍ଟ 'କ'

| ବର୍ଷ | ହିତାଧିକାରୀ ସଂଖ୍ୟା | ମାର୍ଜିନ ରାଶି (ଲକ୍ଷ ଟଙ୍କାରେ) | କର୍ମନିଯୁକ୍ତି ସଂଖ୍ୟା | ହିତାଧିକାରୀ ସଂଖ୍ୟା | ମାର୍ଜିନ ରାଶି (ଲକ୍ଷ ଟଙ୍କାରେ) | କର୍ମନିଯୁକ୍ତି ସଂଖ୍ୟା |
|---|---|---|---|---|---|---|
| ୧୯୯୯-୨୦୦୦ | -- | -- | -- | ୫ | ୯.୦୭ | ୮୦ |
| ୨୦୦୦-୦୧ | -- | -- | -- | ୫୩ | ୩୬.୦୩ | ୪୮୯ |
| ୨୦୦୧-୦୨ | -- | -- | -- | ୪୩୨ | ୮୭.୭୭ | ୧୯୨୪ |
| ୨୦୦୨-୦୩ | -- | -- | -- | ୫୨୯ | ୧୪୩.୫୬ | ୨୯୫୬ |
| ୨୦୦୩-୦୪ | -- | -- | -- | ୭୫୫ | ୩୯୮.୦୫ | ୫୬୮୯ |
| ୨୦୦୪-୦୫ | ୨୯୧ | ୨୦୧.୦୦ | ୫୮୨୦ | ୪୭୫ | ୪୫୧.୨୬ | ୪୮୨୦ |
| ୨୦୦୫-୦୬ | ୩୦୦ | ୩୦୦.୦୦ | ୪୪୨୫ | ୪୧୨ | ୫୨୫.୧୨ | ୭୦୨୨ |
| ୨୦୦୬-୦୭ | ୪୪୩ | ୪୯୧.୦୦ | ୮୧୮୪ | ୫୩୩ | ୫୬୪.୬୨ | ୬୫୮୦ |
| ୨୦୦୭-୦୮ | ୫୪୨ | ୬୧୯.୦୦ | ୧୦୮୧୯ | ୪୩୨ | ୫୦୮.୦୬ | ୪୮୮୨ |
| | | | | | (୩୧ ମାର୍ଚ୍ଚ ୨୦୦୮ ସୁଦ୍ଧା) | |
| **ମୋଟ** | **୧୫୭୬** | **୧୭୦୧.୦୦** | **୨୯୨୪୮** | **୩୬୨୬** | **୨୭୨୩.୫୪** | **୩୪୪୩୨** |

## ଟ) ଓଡ଼ିଆ ଚଳଚ୍ଚିତ୍ର ଉନ୍ନୟନ ନିଗମ (ଓ.ଏଫ୍.ଡି.ସି.), କଟକ

ଓଡ଼ିଆ ଚଳଚ୍ଚିତ୍ର ଉନ୍ନୟନ ନିଗମ ଏକ ବିକାଶମୂଳକ ସଂସ୍ଥା । ଏହା ରାଜ୍ୟର ଚଳଚ୍ଚିତ୍ର ଶିଳ୍ପର ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ମୁଖ୍ୟ ଭୂମିକା ଗ୍ରହଣ କରି ଆସିଅଛି । ଏହି ନିଗମ ୧୯୭୬ ମସିହା ଏପ୍ରିଲ ମାସଠାରୁ କାର୍ଯ୍ୟ ଆରମ୍ଭ କରି ବିଭିନ୍ନ ଯୋଜନା ମାଧ୍ୟମରେ ନିଗମର ବିଭିନ୍ନ ପରିକଳ୍ପନାଗୁଡ଼ିକ ଚଳଚ୍ଚିତ୍ର ଶିଳ୍ପର ବିକାଶ ନିମନ୍ତେ କାର୍ଯ୍ୟ କରି ଆସୁଅଛି । ନିଗମର ୨୦୦୭-୦୮ ପର୍ଯ୍ୟନ୍ତ ବିଭିନ୍ନ କ୍ଷେତ୍ରରେ ହାସଲ କରିଥିବା କାର୍ଯ୍ୟକଳାପ ସମ୍ବନ୍ଧୀୟ ବିବରଣୀ ନିମ୍ନରେ ପ୍ରଦତ୍ତ କରାଗଲା ।

### ୧.କ) ରାଜ୍ୟରେ ଚଳଚ୍ଚିତ୍ର ପ୍ରେକ୍ଷାଳୟ ପ୍ରତିଷ୍ଠା

ଏହି ନିଗମ ରାଜ୍ୟରେ ଜନତା ପ୍ରେକ୍ଷାଳୟ ଏବଂ ଗ୍ରାମାଞ୍ଚଳ ପ୍ରେକ୍ଷାଳୟ ପ୍ରତିଷ୍ଠା କରିବା ପାଇଁ ଉଦ୍ୟୋଗକାରୀମାନଙ୍କୁ ଋଣ ପ୍ରଦାନ କରିବା ନିମନ୍ତେ ଏହି ପରିକଳ୍ପନା ପ୍ରଣୟନ କରିଅଛି । ଏହାଛଡ଼ା ରାଜ୍ୟରେ ଥିବା ପ୍ରେକ୍ଷାଳୟଗୁଡ଼ିକ ନବୀକରଣ କରିବା ପାଇଁ ଏବଂ ସେଗୁଡ଼ିକର ପୁନରୁଦ୍ଧାର କରିବା ନିମନ୍ତେ ଉଦ୍ୟୋଗକାରୀଙ୍କୁ ଋଣ ଦେବାର ବି ବ୍ୟବସ୍ଥା କରିଅଛି । ଏହି ନିଗମ ୨୦୦୬-୦୭ ଆର୍ଥିକ ବର୍ଷ ଶେଷ ସୁଦ୍ଧା ୫୨ଟି ଜନତା ଓ ଗ୍ରାମାଞ୍ଚଳ ପ୍ରେକ୍ଷାଳୟ ନିର୍ମାଣ ପାଇଁ ଟ.୪୯,୨୫,୦୦୦ଙ୍କା ଏବଂ ୩୪ଟି ପୁରୁଣା ପ୍ରେକ୍ଷାଳୟର ନବୀକରଣ ଓ ପୁନରୁଦ୍ଧାର ନିମନ୍ତେ ଟ.୬୧,୪୮,୦୦୦ଙ୍କା ଋଣ ମଞ୍ଜୁର କରିଅଛି ।

ଚଳିତ ଆର୍ଥିକ ବର୍ଷ ୨୦୦୭-୦୮ ସୁଦ୍ଧା ଉକ୍ତ ନିଗମ କୌଣସି ଉଦ୍ୟୋଗକାରୀଙ୍କୁ ପ୍ରେକ୍ଷାଳୟ ପ୍ରତିଷ୍ଠା/ନବୀକରଣ କରିବା ପାଇଁ ଋଣ ପ୍ରଦାନ କରି ନାହିଁ । ଆସନ୍ତା ଆର୍ଥିକ ବର୍ଷ ୨୦୦୮-୦୯ରେ ୫ଟି ସହରାଞ୍ଚଳ ପ୍ରେକ୍ଷାଳୟ ପାଇଁ ୭୫ ଲକ୍ଷ ଟଙ୍କା, ୫ଟି ଗ୍ରାମାଞ୍ଚଳ ପ୍ରେକ୍ଷାଳୟ ପାଇଁ ୫୨ ଲକ୍ଷ ଟଙ୍କା ଏବଂ ୫ଟି ପୁରୁଣା ପ୍ରେକ୍ଷାଳୟର ପୁନରୁଦ୍ଧାର ଓ ନବୀକରଣ ପାଇଁ ୨୦ ଲକ୍ଷ ଟଙ୍କା ଦେବାର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଅଛି ।

ଖ) ଚଳଚ୍ଚିତ୍ର ପ୍ରେକ୍ଷାଳୟକୁ ଅନୁଦାନ ପ୍ରଦାନ (ପ୍ରମୋଦ କର ଫେରସ୍ତ)

ନିଗମର ଏହି ଯୋଜନା/ପରିକଳ୍ପନା ମାଧ୍ୟମରେ ନୂତନ ଚଳଚ୍ଚିତ୍ର ପ୍ରେକ୍ଷାଳୟ ନିର୍ମାତାଙ୍କୁ ପ୍ରଥମ ଦୁଇ ବର୍ଷ ଚଳଚ୍ଚିତ୍ର ପ୍ରଦର୍ଶନ ପାଇଁ ସିନେମା ଟିକଟ ଉପରେ ମିଳୁଥିବା ପ୍ରମୋଦ କର ବାବଦକୁ ରିହାତି ପ୍ରଦାନ କରାଯିବାର ବ୍ୟବସ୍ଥା କରାଯାଇଅଛି ।

୨୦୦୬-୦୭ ଆର୍ଥିକ ବର୍ଷ ଶେଷ ସୁଦ୍ଧା ନିଗମ ଏହି ଯୋଜନାରେ ୧୩ଟି ସିନେମା ଗୃହ ନିର୍ମାତାଙ୍କ ପାଇଁ ଟ.୨୭,୬୭,୦୦୦ଙ୍କା ମଞ୍ଜୁର କରି ସେଥିରୁ ଟ.୧୨,୮୩,୦୦୦ଙ୍କା ୮ଟି ସିନେମା ଗୃହକୁ ପ୍ରଦାନ କରିଅଛି ।

ଚଳିତ ଆର୍ଥିକ ବର୍ଷ ୨୦୦୭-୦୮ ସୁଦ୍ଧା କୌଣସି ସିନେମା ଗୃହକୁ ଅନୁଦାନ ପ୍ରଦାନ କରାଯାଇନାହିଁ । ଆସନ୍ତା ଆର୍ଥିକ ବର୍ଷ ୨୦୦୮-୦୯ରେ ଉକ୍ତ ନିଗମ ୧୩ଟି ସିନେମା ଗୃହକୁ ଟ.୩୬.୪୫.୦୦୦ଙ୍କା ଅନୁଦାନ ଦେବାପାଇଁ ପ୍ରସ୍ତାବ ରଖିଅଛି ।

## ୨. ଚଳଚ୍ଚିତ୍ର ପ୍ରସ୍ତୁତି

### କ) ଚଳଚ୍ଚିତ୍ର ନିର୍ମାତାଙ୍କୁ ଚଳଚ୍ଚିତ୍ର ପ୍ରସ୍ତୁତି ନିମନ୍ତେ ଦୀର୍ଘମିଆଦି ଋଣ ପ୍ରଦାନ

ରାଜ୍ୟରେ ଚଳଚ୍ଚିତ୍ର ନିର୍ମାଣ ପାଇଁ ନିର୍ମାତାଙ୍କୁ ଉତ୍ପାଦିତ କରିବା ନିମନ୍ତେ ନିଗମ ଉକ୍ତ ପରିକଳ୍ପନାଟି ପ୍ରଣୟନ କରିଅଛି । ଉକ୍ତ ନିଗମ ୨୦୦୬-୦୭ ଆର୍ଥିକ ବର୍ଷ ଶେଷ ସୁଦ୍ଧା ୪୧ ଜଣ ଚଳଚ୍ଚିତ୍ର ନିର୍ମାତାଙ୍କୁ ଏହି ଯୋଜନାରେ ଟ.୩,୫୧,୦୦,୦୦୦ଙ୍କା ମଞ୍ଜୁର କରିଅଛି ।

ଚଳିତ ଆର୍ଥିକ ବର୍ଷ ୨୦୦୭-୦୮ ସୁଦ୍ଧା ଚଳଚ୍ଚିତ୍ର ନିର୍ମାତାଙ୍କୁ ଏହି ପରିକଳ୍ପନା ମାଧ୍ୟମରେ ନିଗମ ଚଳଚ୍ଚିତ୍ର ନିର୍ମାଣ ପାଇଁ କୌଣସି ଋଣ ପ୍ରଦାନ କରିନାହିଁ । ଆସନ୍ତା ଆର୍ଥିକ ବର୍ଷ ୨୦୦୮-୦୯ରେ ୫ଟି ଚଳଚ୍ଚିତ୍ର ନିର୍ମାଣ ପାଇଁ ଚଳଚ୍ଚିତ୍ର ନିର୍ମାତାଙ୍କୁ ୭୫ ଲକ୍ଷ ଟଙ୍କା ଦୀର୍ଘ ମିଆଦୀ ଋଣ ଦେବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଅଛି ।

### ଖ) ଚଳଚ୍ଚିତ୍ର ନିର୍ମାତାଙ୍କୁ ସ୍ୱଳ୍ପ ମିଆଦୀ ଋଣ ପ୍ରଦାନ :

ରାଜ୍ୟରେ ଚଳଚ୍ଚିତ୍ର ନିର୍ମାଣ ପାଇଁ ନିର୍ମାତାଙ୍କ ଉତ୍ସାହ ନିମନ୍ତେ ଏହି ପରିକଳ୍ପନାଟି ପ୍ରଣୟନ କରିଅଛି । ୨୦୦୬-୦୭ ଆର୍ଥିକ ବର୍ଷ ଶେଷ ସୁଦ୍ଧା ନିଗମ ଏହି ଯୋଜନାରେ ୧୦୧ ଜଣ ଚଳଚ୍ଚିତ୍ର ନିର୍ମାତାଙ୍କୁ ଟ.୧,୫୫,୦୦,୦୦୦ଙ୍କା ଋଣ ମଞ୍ଜୁର କରିଅଛି ।

ଚଳିତ ଆର୍ଥିକ ବର୍ଷ ୨୦୦୭-୦୮ ସୁଦ୍ଧା ଚଳଚ୍ଚିତ୍ର ନିର୍ମାତାଙ୍କୁ ଚଳଚ୍ଚିତ୍ର ନିର୍ମାଣ ପାଇଁ ନିଗମ କୌଣସି ସ୍ୱଳ୍ପ ମିଆଦୀ ଋଣ ପ୍ରଦାନ କରିନାହିଁ । ଆସନ୍ତା ଆର୍ଥିକ ବର୍ଷ ୨୦୦୮-୦୯ରେ ୫ଟି ଚଳଚ୍ଚିତ୍ର ନିର୍ମାଣ ପାଇଁ ଚଳଚ୍ଚିତ୍ର ନିର୍ମାତାଙ୍କୁ ୨୦ ଲକ୍ଷ ଟଙ୍କା ସ୍ୱଳ୍ପମିଆଦି ଋଣ ଦେବାର ଲକ୍ଷ୍ୟଧାର୍ଯ୍ୟ କରାଯାଇଛି ।

## ୩. ଚଳଚ୍ଚିତ୍ର ନିର୍ମାତାଙ୍କୁ ଅନୁଦାନ ପ୍ରଦାନ

ରାଜ୍ୟରେ ଅଧିକ ଚଳଚ୍ଚିତ୍ର ନିର୍ମାଣ ପାଇଁ ନିଗମ ଚଳଚ୍ଚିତ୍ର ନିର୍ମାତାଙ୍କୁ ଅନୁଦାନ ପ୍ରଦାନ କରି ଉତ୍ସାହିତ କରିଥାଏ । ଏହି ପରିକଳ୍ପନାଟି ରାଜ୍ୟ ସରକାରଙ୍କ ଅନୁମୋଦନ ପରେ ନିଗମରେ କାର୍ଯ୍ୟକାରୀ ହୋଇଅଛି । ୨୦୦୬-୦୭ ଆର୍ଥିକ ବର୍ଷ ଶେଷ ସୁଦ୍ଧା ଉକ୍ତ ନିଗମ ଏହି ଯୋଜନାରେ ୨୮୩ ଜଣ ଚଳଚ୍ଚିତ୍ର ନିର୍ମାତାଙ୍କୁ ପ୍ରସ୍ତୁତି ପାଇଁ ଟ.୪,୨୩,୦୦,୦୦୦ଙ୍କା ସହାୟତା ପ୍ରଦାନ ପାଇଁ ଅର୍ଥ ମଞ୍ଜୁର କରିଅଛି ।

ଚଳିତ ଆର୍ଥିକ ବର୍ଷ ୨୦୦୭-୦୮ ସୁଦ୍ଧା ନିଗମ ଚଳଚ୍ଚିତ୍ର ନିର୍ମାତାଙ୍କୁ ଏହି ପରିକଳ୍ପନା ମାଧ୍ୟମରେ କୌଣସି ଅନୁଦାନ ପ୍ରଦାନ କରିନାହିଁ । ମାତ୍ର ଉକ୍ତ ନିଗମ ଆସନ୍ତା ଆର୍ଥିକ ବର୍ଷ ୨୦୦୮-୦୯ରେ ୮୨ ଜଣ ଚଳଚ୍ଚିତ୍ର ନିର୍ମାତାଙ୍କୁ ଟ.୧,୭୪,୦୫,୦୦୦ଙ୍କା ଅନୁଦାନ ଦେବାପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଅଛି ।

## ୪. ଋଣ ଆଦାୟ

ଏହି ନିଗମ ଋଣ ଗ୍ରହୀତାମାନଙ୍କଠାରୁ ଋଣ ଆଦାନ କରିବା ନିମନ୍ତେ ବିଭିନ୍ନ ପଦକ୍ଷେପମାନ ହାତକୁ ନେଇଛି । ଯଥା- ତାଙ୍କ ସହିତ ବ୍ୟକ୍ତିଗତ ଯୋଗାଯୋଗ ଓ ଲିଖିତ ପଦକ୍ଷେପମାନ ହାତକୁ ନେଇଛି । ଯଥା- ତାଙ୍କ ସହିତ ବ୍ୟକ୍ତିଗତ ଯୋଗାଯୋଗ ଓ ଲିଖିତ ବ୍ୟବସ୍ଥା ଓପିଡିଆର ଆକ୍ଟ ମାଧ୍ୟମରେ ସାର୍ଟିଫିକେଟ କେସ୍ ଦରଜ କରିଅଛି । ଅଧିକାଂଶ କ୍ଷେତ୍ରରେ ଯେଉଁମାନେ ଋଣ ଖିଲାପକାରୀ ସେମାନଙ୍କର କେସ୍ ନିର୍ଦ୍ଦିଷ୍ଟ ଜିଲ୍ଲା ସାର୍ଟିଫିକେଟ ଅଧିକାରୀଙ୍କ ନିକଟକୁ ପଠାଯାଇ ସେମାନଙ୍କର ବନ୍ଧକ ସମ୍ପତ୍ତିରୁ ନିଗମର ଋଣ ଓ ସୁଧ ବାବଦକୁ ବାକିଆ ଥିବା ଅବଶିଷ୍ଟ ପାଉଣା ଆଦାୟ କରିବା ପାଇଁ ପଦକ୍ଷେପ ନିଆଯାଇଛି । କେତେକ କ୍ଷେତ୍ରରେ ମଧ୍ୟ ନିଗମ ସାର୍ଟିଫିକେଟ ଅଧିକାରୀଙ୍କ ସହିତ ମିଳିତ ଉଦ୍ୟମ କରି ଋଣ ଖିଲାପକାରୀଙ୍କଠାରୁ ଋଣ ଆଦାୟ କରିବା ବ୍ୟବସ୍ଥା କରୁଅଛି । ନିଗମ ଏହି ଯୋଜନାରେ ୨୦୦୬-୦୭ ଆର୍ଥିକ ବର୍ଷ ଶେଷ ସୁଦ୍ଧା ଟ.୪,୪୭,୪୭,୦୦୦ଙ୍କା ଅର୍ଥ ଆଦାୟ କରିଅଛି ଯାହାକି ନିଗମ ଋଣ ପ୍ରଦାନ କରିଥିବା ଟ.୩,୦୭,୦୦,୦୦୦ଙ୍କା ଉପରେ ଆଦାୟ କରାଯାଇଅଛି । ନିଗମ ୨୦୦୭-୦୮ ଆର୍ଥିକ ବର୍ଷରେ ୧,୯୪,୦୦୦ ଟଙ୍କା ସାର୍ଟିଫିକେଟ କୋର୍ଟ ମାଧ୍ୟମରେ ଏବଂ ୭୮,୦୦୦ ଟଙ୍କା ଋଣଗ୍ରହୀତାମାନଙ୍କଠାରୁ ସିଧାସଳଖ ଆଦାୟ କରିଛି ।